# ଶ୍ରୀ ଜଗନ୍ନାଥ ଓ ନବକଳେବର

ଲେଖକ

ଅଧ୍ୟାପକ ଡଃ ଶ୍ରୀ କାହ୍ନୁଚରଣ ମିଶ୍ର, କଟକ

ଓଡ଼ିଆ ବିଭାଗର ରିଡର, ବକ୍ସି ଜଗବନ୍ଧୁ କଲେଜ,

ଭୁବନେଶ୍ୱର

Author of the Cult of

**Sri Jagannatha**

ପ୍ରକାଶକ

ଶ୍ରୀ ରାମକୃଷ୍ଣ ପୂଜାପଣ୍ଡା ସାମନ୍ତ

ପ୍ରାପ୍ତିସ୍ଥାନ

ବିଦ୍ୟାଭବନ, ପୁରୀ



ମୂଲ୍ୟ ୫ ୨.୦୦

# ଶ୍ରୀ ଶ୍ରୀ ଜଗନ୍ନାଥଦେବୋ ଜୟତ

ଜଗନ୍ନାଥ ଧର୍ମ ସକଳ ଧର୍ମର ସାର । ଜଗନ୍ନାଥକ୍ଷେତ୍ରସ୍ଥ ବିଧିବିଧାନ, ଉପାସନାପ୍ରଣାଳୀ ଓ ଉତ୍ସବାଦିର ପ୍ରକ୍ରିୟା ଅସାଧାରଣ । ସେ ସବୁ ଯାଥାଯଥ-ଭାବେ ବର୍ଣ୍ଣନା ଓ ଚର୍ଚ୍ଚା କରିବା ଦୁରୂହ ବ୍ୟାପାର ହେଲେହେଁ ଆମ୍ଭେମାନେ ଏହି କ୍ଷୁଦ୍ର ପୁସ୍ତିକାମାଧ୍ୟମରେ ସେ ଦିଗରେ କିଛି ଉଦ୍ୟମ କରିଅଛୁ । ଏହି ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟରେ ଯେଉଁ ଅଭିଜ୍ଞ ସଜ୍ଜନବୃନ୍ଦ ଆମ୍ଭମାନଙ୍କୁ ସାହାଯ୍ୟ କରି କୃତଜ୍ଞତା ଭାଜନ ହୋଇଛନ୍ତି, ସେମାନଙ୍କ ମଧ୍ୟରେ ସର୍ବଶ୍ରୀ ହରିହର ପୂଜାପଣ୍ଡା, ବଟକୃଷ୍ଣ ପୂଜାପଣ୍ଡା, ସୋମନାଥ ଖୁଣ୍ଟିଆ, ହଳଧର ଦାସ ମହାପାତ୍ର (ବଡ଼ବାଡ଼ ଦଇତା ) ଓ ଡାକ୍ତର ସୁଦର୍ଶନ ପଟ୍ଟନାୟକଙ୍କ ନାମବିଶେଷ ଉଲ୍ଲେଖଯୋଗ୍ୟ । ପୁନଶ୍ଚ ଯେଉଁ ଯେଉଁ ଗ୍ରନ୍ଥର ସହାୟତା ନିଆଯାଉଛି ତନ୍ମଧ୍ୟରେ ତୀର୍ଥ ଚିନ୍ତାମଣି, ସୌଭାଗ୍ୟ ମଞ୍ଜୁଷା, ଶ୍ରୀକ୍ଷେତ୍ର ଓ ନୀଳାଦ୍ରି ମହୋଦୟ ପ୍ରଧାନ ।

ଆମ୍ଭେମାନେ ଏ କାର୍ଯ୍ୟରେ କେତେଦୂର କୃତକାର୍ଯ୍ୟ ହୋଇଅଛୁଁ ତାହା ସୁଧୀ ପାଠକବର୍ଗ ବିଗ୍ଭର କରିବେ । ତଥାପି ଏହା ସ୍ୱୟଂ ଜଗନ୍ନାଥଙ୍କ ସମ୍ବନ୍ଧରେ ଲିଖିତ ହୋଇଥିବାରୁ ସର୍ବଜନାଦୃତ ହେବ ବୋଲି ଆମ୍ଭମାନଙ୍କର ବିଶ୍ୱାସ । କାରଣ ଭକ୍ତକବି ଅଭିମନ୍ୟୁ ଯଥାର୍ଥରେ କହିଛନ୍ତି :—

"ଅମୃତ ଯେ ହେଉ ଯେ ହେଉଁ ଶାଳଗ୍ରାମ ସ୍ନାନେ
ଅଗ୍ରାହ୍ୟ କାହାର ପାଦୋଦକ ନାମ ଜ୍ଞାନେ ହେଁ ।"

—ଲେଖକ

# ଶ୍ରୀ ଶ୍ରୀ ଜଗନ୍ନାଥଦେବୋ ଜୟତି

ଜଗନ୍ନାଥ ଧର୍ମ ସକଳ ଧର୍ମର ସାର । ଜଗନ୍ନାଥକ୍ଷେତ୍ରସ୍ଥ ବିଧିବିଧାନ, ଉପାସନାପ୍ରଣାଳୀ ଓ ଉତ୍ସବାଦିର ପ୍ରକ୍ରିୟା ଅସାଧାରଣ । ସେ ସବୁ ଯଥାଯଥ-ଭାବେ ବର୍ଣ୍ଣନା ଓ ଚର୍ଚ୍ଚା କରିବା ଦୁରୂହ ବ୍ୟାପାର ହେଲେହେଁ ଆମ୍ଭେମାନେ ଏହି କ୍ଷୁଦ୍ର ପୁସ୍ତିକାମାଧ୍ୟମରେ ସେ ଦିଗରେ କିଛି ଉଦ୍ୟମ କରିଅଛୁ । ଏହି ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟରେ ଯେଉଁ ଅଭିଜ୍ଞ ସଜ୍ଜନବୃନ୍ଦ ଆମ୍ଭମାନଙ୍କୁ ସାହାଯ୍ୟ କରି କୃତଜ୍ଞତା ଭାଜନ ହୋଇଛନ୍ତି, ସେମାନଙ୍କ ମଧ୍ୟରେ ସର୍ବଶ୍ରୀ ହରିହର ପୂଜାପଣ୍ଡା, ବଟକୃଷ୍ଣ ପୂଜାପଣ୍ଡା, ସୋମନାଥ ଖୁଣ୍ଟିଆ, ହଳଧର ଦାସ ମହାପାତ୍ର (ବଡ଼ଦାଣ୍ଡ ଦଇତା ) ଓ ଡଃ ସୁଦର୍ଶନ ପଟ୍ଟନାୟକଙ୍କ ନାମବିଶେଷ ଉଲ୍ଲେଖଯୋଗ୍ୟ । ପୁନଶ୍ଚ ଯେଉଁ ଯେଉଁ ଗ୍ରନ୍ଥର ସହାୟତା ନିଆଯାଉଛି ତନ୍ମଧ୍ୟରେ ତୀର୍ଥ ଚିନ୍ତାମଣି, ସୌଭାଗ୍ୟ ମଞ୍ଜୁଷା, ଶ୍ରୀକ୍ଷେତ୍ର ଓ ନୀଳାଦ୍ରି ମହୋଦୟ ପ୍ରଧାନ ।

ଆମ୍ଭେମାନେ ଏ କାର୍ଯ୍ୟରେ କେତେଦୂର କୃତକାର୍ଯ୍ୟ ହୋଇଅଛୁଁ ତାହା ସୁଧୀ ପାଠକବର୍ଗ ବିଗ୍ଭର କରିବେ । ତଥାପି ଏହା ସ୍ୱୟଂ ଜଗନ୍ନାଥଙ୍କ ସମ୍ବନ୍ଧରେ ଲିଖିତ ହୋଇଥିବାରୁ ସର୍ବଜନାଦୃତ ହେବ ବୋଲି ଆମ୍ଭମାନଙ୍କର ବିଶ୍ୱାସ । କାରଣ ଭକ୍ତକବି ଅଭିମନ୍ୟୁ ଯଥାର୍ଥରେ କହିଛନ୍ତି :—

"ଅମୃତ ଯେ ହେଉ ଯେ ହେଉଣି ଶାଳଗ୍ରାମ ସ୍ନାନେ
ଅଗ୍ରାହ୍ୟ କାହାର ପାଦୋଦକ ନାମ ଜ୍ଞାନେ ହେଁ ।"

—ଲେଖକ

ଯିଏ ମୋତେ ଜଗନ୍ନାଥ ଧର୍ମ, ଦର୍ଶନ ଓ ସାହିତ୍ୟ ସଂପର୍କରେ ଗବେଷଣା କରିବା ପାଇଁ ଅକୁଣ୍ଠିତ ଚିତ୍ତରେ ସାହାଯ୍ୟ କରିଛନ୍ତି, ସେହି ଆଦର୍ଶପୁରୁଷ, ବିଶିଷ୍ଟ ବୈଜ୍ଞାନିକ, ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି, ପଦ୍ମଭୂଷଣ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କୁ ଏ କ୍ଷୁଦ୍ର ପୁସ୍ତିକାଟି ଉତ୍ସର୍ଗ କଲି ।

କାହ୍ନୁଚରଣ

"ସର୍ବେଷାମପି ଦେବାନାଂ ରାଜା
ଶ୍ରୀ ପୁରୁଷୋତ୍ତମଃ
ସର୍ବେଷାମପି କ୍ଷେତ୍ରାଣାଂ ରାଜା
ଶ୍ରୀ ପୁରୁଷୋତ୍ତମଃ ।"

ଜଗନ୍ନାଥ ଦେବ ଓ ଜଗନ୍ନାଥ ଧାମ ଯେପରି ବିଶ୍ୱବିଶ୍ରୁତ, ଜଗନ୍ନାଥ ଧାମସ୍ଥ ପ୍ରଚଳିତ ଧର୍ମ ଓ ଦର୍ଶନ ସେହିପରି ବ୍ୟାପକ ଓ ଅସଂକୁଚିତ । ଏହା ଅନନ୍ୟ ସାଧାରଣ ଏବଂ ଶୈବ ସୌର ଶାକ୍ତ ଗାଣପତ୍ୟ କୌଳ ଓ ବୈଷ୍ଣବ ପ୍ରଭୃତି ସକଳ ଧର୍ମ ଏହାର କୁକ୍ଷିଗତ । କୌଣସି ସଂପ୍ରଦାୟର ବୈମତ୍ୟ ଏଠାରେ ନାହିଁ । ଜଗନ୍ନାଥ ଦେବ ନିର୍ଗୁଣ, ନିରାକାର, ନିରଞ୍ଜନ ଓ ବ୍ରହ୍ମରୂପୀ ଅଟନ୍ତି । ପରନ୍ତୁ ଭେଦମୂଳକ ଘଟନା ଓ ଉପାସନା ନିର୍ଗୁଣରେ ସମ୍ଭବପର ନ ହେବା ହେତୁ ଦୀନବଂଧୁ ଦାରୁମୂର୍ତ୍ତିରେ ସଗୁଣ ଭାବ ଭକ୍ତାନୁଗ୍ରହରେ ପ୍ରକଟାଇ ଅଛନ୍ତି । ଏହାହିଁ ଏ ଧାମର ବୈଶିଷ୍ଟ୍ୟ ।

ଜଗନ୍ନାଥ ଧାମଭଳି ଜଗନ୍ନାଥ ମନ୍ଦିର ମଧ୍ୟ ବିରାଟ ବିଶ୍ୱ ବିଗ୍ରହର ପ୍ରତିଚ୍ଛବି । ମନେହୁଏ ସତେକି ଅବ୍ୟକ୍ତ ସ୍ୱୟମ୍ଭୂ ପ୍ରାଥମିକ ସୃଷ୍ଟି ଇଚ୍ଛାରେ ବଶବର୍ତ୍ତୀ ହୋଇ ଉକ୍ତ ଧାମରେ ପ୍ରଥମ ଜୀବାବତାରରେ ଆବିର୍ଭୂତ ହୋଇ ଅଛନ୍ତି । ପ୍ରାଚୀନ କାଳରେ

ଉକ୍ତ ଧାମ ଶ୍ରୀକ୍ଷେତ୍ର ବା ପୁରୁଷୋତ୍ତମକ୍ଷେତ୍ର ନାମରେ ବିଶେଷ ଭାବରେ ପରିଚିତ । ପୁରାଣମାନଙ୍କରେ ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ-ସମ୍ବନ୍ଧ ଉଦ୍‌ଘୋଷିତ । ବ୍ରହ୍ମ, ବିଷ୍ଣୁ, ନାରଦ, ପଦ୍ମ ଓ ସ୍କନ୍ଦ ପୁରାଣରେ ପୁରୁଷୋତ୍ତମ ଦେବତା ଓ କ୍ଷେତ୍ର ମାହାତ୍ମ୍ୟ ସଂପର୍କରେ ସ୍ୱତନ୍ତ୍ର ପରିଚ୍ଛେଦମାନ ରହିଅଛି । ଏତଦ୍‌ବ୍ୟତୀତ ବିଭିନ୍ନ ତନ୍ତ୍ର, ଆଗମ ଏପରିକି ବେଦରେ ମଧ୍ୟ ଏହାଙ୍କର ଉଲ୍ଲେଖ ଦେଖିବାକୁ ମିଳେ । ବର୍ତ୍ତମାନ ଭାରତବର୍ଷରେ ଏ କ୍ଷେତ୍ର ଏକ ପ୍ରସିଦ୍ଧ ବୈଷ୍ଣବ କ୍ଷେତ୍ର ରୂପରେ ଖ୍ୟାତ ଏବଂ ଚତୁର୍ଦ୍ଧାମ ମଧ୍ୟରେ ଏକ ଶ୍ରେଷ୍ଠ ଧାମ । କେବେ କେଉଁ ପରିସ୍ଥିତିରେ ଏ କ୍ଷେତ୍ର ଏକ ବୈଷ୍ଣବ କ୍ଷେତ୍ରରେ ପରିଣତ ହେଲା ତାହା କହିବା କଷ୍ଟକର । ହେଲେ ମଧ୍ୟ ବର୍ତ୍ତମାନ ଜଗନ୍ନାଥ ମନ୍ଦିରର ନିର୍ମାତା ଅନନ୍ତ ବର୍ମନ ଚୋଡ଼ଗଙ୍ଗଦେବଙ୍କ ସମୟରୁ ହିଁ ଯେ ଏହି ଧାମ ସର୍ବଶ୍ରେଷ୍ଠ ବୈଷ୍ଣବ କ୍ଷେତ୍ର ରୂପରେ ସମ୍ମାନିତ ହେବାକୁ ଲାଗିଲା, ଏଥିରେ ଆଉ ସନ୍ଦେହ ନାହିଁ । ଉପାସନାରେ ସମନ୍ୱୟ ରଖିବା ସକାଶେ ଶିବ ଓ ଦୁର୍ଗାଙ୍କୁ ବିଷ୍ଣୁଙ୍କ ସହ ଏକ ପୀଠରେ ଆରାଧନା କରାଗଲା ସିନା, ମାତ୍ର ବିଷ୍ଣୁରୂପୀ ଜଗନ୍ନାଥଙ୍କର ପ୍ରାଧାନ୍ୟ ହିଁ ଘୋଷିତ ହେଲା ଓ ବୈଷ୍ଣବ ଧର୍ମର ଶ୍ରେଷ୍ଠତ୍ୱ ପ୍ରମାଣିତ ହେଲା । ଠିକ୍ ଏହିକବେଳେ ବୋଧହୁଏ ଚତୁର୍ଦ୍ଧା-ମୂର୍ତ୍ତିଙ୍କର କଳ୍ପନା ହୋଇ ସାରିଥିଲା, ଏବଂ ଗୋଟିଏ ପୀଠରେ ବଳଭଦ୍ର, ସୁଭଦ୍ରା ଜଗନ୍ନାଥ ଓ ସୁଦର୍ଶନ ପୂଜା ପାଇଲେ । କୃଷ୍ଣୋପାସନା ପ୍ରଭାବରେ ବଳଭଦ୍ରଙ୍କୁ ବଳରାମ ରୂପେ ଗ୍ରହଣ କରି ଜଗନ୍ନାଥ ରୂପୀ କୃଷ୍ଣଙ୍କ ବଡ଼ଭାଇ ଓ ସୁଭଦ୍ରାଙ୍କୁ ଭଉଣୀ ଓ ସୁଦର୍ଶନଙ୍କୁ ଆୟୁଧ ରୂପରେ ଘୋଷଣା କରାଗଲା । କିନ୍ତୁ ଶୈବ-ମାନେ ବଳଭଦ୍ରଙ୍କୁ ଶିବ, ଶାକ୍ତମାନେ ସୁଭଦ୍ରାଙ୍କୁ ଶକ୍ତି, ଦୁର୍ଗା ବା ଭଦ୍ରକାଳୀ ରୂପରେ ଓ ବୈଷ୍ଣବମାନେ ଜଗନ୍ନାଥଙ୍କୁ ବିଷ୍ଣୁ ରୂପରେ

ଉପାସନା କରି ଆସୁ ଅଛନ୍ତି । ଏ ପର୍ଯ୍ୟନ୍ତ ଏ ପୀଠ ଏକ ପ୍ରସିଦ୍ଧ ଶାକ୍ତ ପୀଠ ରୂପରେ ମଧ୍ୟ ପରିଚିତ ।

"ବିମଳା ଭୈରବୀ ଯତ୍ର
ଜଗନ୍ନାଥସ୍ତୁ ଭୈରବଃ !"

ଯେଉଁଠି ବିମଳା ଭୈରବୀ, ସେଠାରେ ଜଗନ୍ନାଥ ହେଉଛନ୍ତି ଭୈରବ ।

ସେ ଯାହାହେଉ ପ୍ରାଚୀନ ପୁରାଣ ଆଗମ ବା ବେଦରେ କେବଳ ଗୋଟିଏ ମୂର୍ତ୍ତିଙ୍କର ପରିଚୟ ମିଳୁଅଛି । ସେ ପୁଣି ଦାରୁ ବିଗ୍ରହ । ପରବର୍ତ୍ତୀ କାଳରେ ସେ ଦାରୁବ୍ରହ୍ମ ରୂପରେ ଉପାସ୍ୟ ହୋଇ ଆସୁଅଛନ୍ତି । ଅନ୍ୟାନ୍ୟ ପୀଠସ୍ଥ ଦେବତା ପ୍ରସ୍ତର ବିଗ୍ରହ, କିଏବା ମଣି ବିଗ୍ରହ , ଅଥବା କିଏ ଧାତୁ ବିଗ୍ରହ। କିନ୍ତୁ ଶ୍ରୀକ୍ଷେତ୍ରସ୍ଥ ଦେବତା ଦାରୁ ବିଗ୍ରହ ବା ଦାରୁବ୍ରହ୍ମ । ଭାରତର ଅନ୍ୟାନ୍ୟ ପୀଠର ଦେବତା ସଂଖ୍ୟାରେ ଏକ କିମ୍ବା ଦୁଇ କିମ୍ବା ଖୁବ୍ ବେଶିହେଲେ ତିନି । ମାତ୍ର ଏ ପୀଠର ଦେବତାଙ୍କ ସଂଖ୍ୟା ଚାରି । ପ୍ରସିଦ୍ଧ ଜ୍ୟୋତିର୍ବିଦ୍ ପଠାଣି ସାମନ୍ତ ସପ୍ତାବରଣ ପୀଠର ପରିକଳ୍ପନା କରି ପୁରୁଷୋତ୍ତମ କ୍ଷେତ୍ରସ୍ଥ ରତ୍ନ ବେଦୀରେ ଲକ୍ଷ୍ମୀ, ପୃଥ୍ୱୀ, ନୀଳମାଧବ, ସୁଦର୍ଶନ ଚକ୍ର, ଚକ୍ରଧାରୀ ନାରାୟଣ, ଅବତାରୀ ଭ୍ରାତୃ ବଳଭଦ୍ର ଓ ସୁଭଦ୍ରା ଏହିପରି ୭ଟି ଦେବତାଙ୍କ ପାଇଁ ସପ୍ତାବରଣପୀଠର ପରିକଳ୍ପନା ମଧ୍ୟ କରିଛନ୍ତି । ଅନ୍ୟାନ୍ୟ ପ୍ରଦେଶର ଦେବତାଙ୍କ ନାମ ସେହି ସେହି ପ୍ରଦେଶ ବା ସ୍ଥାନର ନାମାନୁସାରେ କଳ୍ପିତ । ମାତ୍ର ଏ ପୀଠର ଦେବତାଙ୍କ ନାମ ଜଗତର ନାଥ ଜଗନ୍ନାଥ । ଅନ୍ୟାନ୍ୟ ସ୍ଥାନରେ ବିଭିନ୍ନ ଅବତାରମାନଙ୍କର ଉପାସନା ପ୍ରଚଳିତ । ମାତ୍ର ଏ ଧାମରେ ମୂର୍ତ୍ତିବ୍ରହ୍ମର ଉପାସନା ପରିଦୃଷ୍ଟ।

ଏସବୁ ଏହି ପୁରୁଷୋତ୍ତମକ୍ଷେତ୍ରର ବିଶେଷତ୍ୱ । ଐତିହାସିକ ଓ ବୈଦିକ ପ୍ରମାଣ ଦୃଷ୍ଟିରୁ ଏ ଦେବତାଙ୍କ ପ୍ରାଚୀନତା ସଂପର୍କରେ ଋଗ୍ ବେଦର ୧୦ମ ମଣ୍ଡଳ ୧୫୫ ସୂକ୍ତଟି ପ୍ରଣିଧାନ ଯୋଗ୍ୟ ।

"ଅଦୋ ଯଦ୍ଦାରୁ ପ୍ଲବତେ ସିନ୍ଧୋଃ ପାରେ ଅପୂରୁଷମ୍ ତଦା ରଭସ୍ୱ ଦୁର୍ହଣୋ ତେନଗଚ୍ଛ ପରସ୍ତରମ୍ ।" ଅର୍ଥାତ୍ "ହେ ଅଲକ୍ଷ୍ମୀ, ସିନ୍ଧୁ ତୀରରେ ଯେଉଁ ଅପୌରୁଷେୟ ଦାରୁ ଭାସୁଛି, ସେହି ଦାରୁକୁ ଆଶ୍ରୟ କରି ଅପର ତୀରକୁ ଚାଲିଯାଅ । ପ୍ରାକ୍-ସାୟଣ-ଯୁଗୀୟ ବେଦର ଭାଷ୍ୟକାର ଭେଙ୍କଟ ମାଧବଙ୍କ ଅନୁସାରେ ଏହା ଏକ ଅଲକ୍ଷ୍ମୀ ନାଶକାରକ ମନ୍ତ୍ର । ସ୍କନ୍ଦସ୍ୱାମୀଙ୍କ ଭାଷ୍ୟ ଏ ପର୍ଯ୍ୟନ୍ତ ଦିବାଲୋକକୁ ଆସି ପାରିନାହିଁ । ମାତ୍ର ବେଦର ଅନ୍ୟତମ ଭାଷ୍ୟକାର ଶ୍ରୀମଦ୍ ସାୟଣାଚାର୍ଯ୍ୟ ଏହି ସୂକ୍ତକୁ ପୁରୁଷୋତ୍ତମ ଅର୍ଥରେ ହିଁ ଗ୍ରହଣ କରିଛନ୍ତି । ତାଙ୍କର ଟୀକା ଅନୁସାରେ ଏହାର ମର୍ମାର୍ଥ "ହେ ଶ୍ରେଷ୍ଠ ଭକ୍ତଗଣ ସିନ୍ଧୁ ତୀରରେ ସ୍ୱୟଂ ସ୍ୱୟମ୍ଭୂ ପୁରୁଷୋତ୍ତମ ଦାରୁମୟ ବିଗ୍ରହ ରୂପରେ ବିରାଜିତ । ଆପଣମାନେ ତାଙ୍କୁ ହିଁ ଆଶ୍ରୟ କରି ଅର୍ଥାତ୍ ତାଙ୍କର ଉପାସନା ଦ୍ୱାରା ଶ୍ରେଷ୍ଠ ଦିବ୍ୟ ଲୋକକୁ ଗମନ କରନ୍ତୁ ।" ପ୍ରକାଶ ଥାଉକି ପୁରୀ ବ୍ୟତୀତ ସମଗ୍ର ଭାରତ ବର୍ଷରେ ସିନ୍ଧୁ ତୀରରେ ଦାରୁ ବିଗ୍ରହମୟ ଦେବତା ପୁରୁଷୋତ୍ତମଙ୍କ ବ୍ୟତୀତ ଆଉ କୁତ୍ରାପି ପୂଜିତ ହେଉ ନାହାନ୍ତି । ତେଣୁ ସାୟଣାଚାର୍ଯ୍ୟଙ୍କ ମତକୁ ହିଁ ଆମକୁ ବର୍ତ୍ତମାନ ଗ୍ରହଣ କରିବାକୁ ପଡ଼ିବ । ଏହି ମନ୍ତ୍ରଟି ପୁନର୍ବାର ଅଥର୍ବ ବେଦରେ ଉଲ୍ଲିଖିତ ହୋଇଅଛି । ବେଦକୁ ଛାଡ଼ିଦେଲେ ରାମାୟଣ, ମହାଭାରତରେ ମଧ୍ୟ ଜଗନ୍ନାଥ ଦେବ ବା ଜଗନ୍ନାଥ ଧର୍ମର ସଙ୍କେତ ଯେ ନ ମିଳୁଛି ଏପରି ନୁହେଁ । ତେବେ ବେଦ, ଉପନିଷଦ,

ରାମାୟଣ, ମହାଭାରତକୁ ନେଇ ଏ ଧର୍ମ ବା ଦେବତାଙ୍କର ଯୋଗ-ସୂତ୍ର ସଂସ୍ଥାପନ କରିବା କଷ୍ଟକର ବ୍ୟାପାର । ବାଲ୍ମୀକି ରାମାୟଣସ୍ଥ ଉତ୍ତର କାଣ୍ଡରେ "ଆରାଧୟ ଜଗନ୍ନାଥ ମିକ୍ଷ୍ୱାକୁ-କୁଳ-ଦୈବତମ୍" ଅଥବା ମହାଭାରତର ଶାନ୍ତି ପର୍ବରେ "ଏ ଷୋଧର୍ମ ଜଗନ୍ନାଥାତ୍ ସାକ୍ଷାତ୍ ନାରାୟଣ ନୃପଃ" ପ୍ରଭୃତି ଉକ୍ତି ପ୍ରଣିଧେୟ । ଉଲ୍ଲିଖିତାଂଶକୁ ଉପଜୀବ୍ୟ କରି ଏ ଦେବତା ବା ଧର୍ମର ମୌଳିକ ସୂତ୍ର ସ୍ଥିର କରିବା ଦୁରୂହ ବ୍ୟାପାର । କିନ୍ତୁ ରାମାୟଣସ୍ଥ କିଷ୍କିନ୍ଧା କାଣ୍ଡର ସୀତା ଅନ୍ୱେଷଣ ପର୍ଯ୍ୟାୟରେ ଯେଉଁ ଯେଉଁ ସ୍ଥାନ ସୀତା ଅନ୍ୱେଷଣ କାର୍ଯ୍ୟରେ ଅନ୍ତର୍ଭୁକ୍ତ ହେବ, ସେ ପ୍ରସଙ୍ଗରେ ମର୍କଟ-ମାନଙ୍କୁ ସୁଗ୍ରୀବ ଯେଉଁ ନିର୍ଦ୍ଦେଶ ଦେଇଛନ୍ତି, ତାହା ବାସ୍ତବିକ ଅନୁଧ୍ୟାନର ବିଷୟ । ଉକ୍ତ ନିର୍ଦ୍ଦେଶରୁ ଆମେ ପୁରୁଷୋତ୍ତମ, ଦେହୁକା, ସୁଦର୍ଶନ, ଅନନ୍ତ ଦେବ ଏସବୁ ନାମର ପରିଚୟ ପାଉ । କହିବା ବାହୁଲ୍ୟ ଯେ ଉପରୋକ୍ତ ଦେବତାଙ୍କ ନାମ କେବଳ ମାତ୍ର ପୁରୀ ନୀଳାଚଳସ୍ଥ ଚତୁର୍ବ୍ୟୂହାତ୍ମକ ଅଧୁନା ପୂଜିତ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଯେ ସଂକେତିତ ନ କରୁଛି ଏହା କିଏ କହି ପାରିବ ?

ପୁରୁଷୋତ୍ତମ କ୍ଷେତ୍ରଟିର ଆଉ ଏକ ବିଶେଷତ୍ୱ ହେଉଛି ଏହା ୪ଟି ମଣ୍ଡଳ ବା କ୍ଷେତ୍ରରେ ବିଭକ୍ତ । ମୂଳ ନୀଳାଚଳର ସମୁଦ୍ର ନିକଟବର୍ତ୍ତୀ ସ୍ଥାନଟି ଶଙ୍ଖ ମଣ୍ଡଳ ବା ଶଙ୍ଖ କ୍ଷେତ୍ର ନାମରେ ପରିଚିତ । ମହାନଦୀରୁ ବହିର୍ଗତ କୁଶଭଦ୍ରା ନଦୀ ନିକଟବର୍ତ୍ତୀ ସ୍ଥାନ ଭୁବନେଶ୍ୱରକୁ କେହି ଚକ୍ରମଣ୍ଡଳ ବା ଚକ୍ରକ୍ଷେତ୍ର ଆଉ ବା କେହି ପୁରୀ ଚକ୍ର ତୀର୍ଥସ୍ଥ ଦେବତା ଚକ୍ର ନାରାୟଣଙ୍କୁ ଚକ୍ରକ୍ଷେତ୍ର ବୋଲି କହିଥାନ୍ତି । ବୈତରଣୀ ତୀରବର୍ତ୍ତୀ ଯାଜପୁରକୁ ଗଦାମଣ୍ଡଳ ବା ଗଦାକ୍ଷେତ୍ର ଏବଂ ଚନ୍ଦ୍ରଭାଗା ନଦୀ ତୀରସ୍ଥ କୋଣାର୍କକୁ

ପଦ୍ମମଣ୍ଡଳ ବା ପଦ୍ମକ୍ଷେତ୍ର ବୋଲି ନାମିତ କରିଥାନ୍ତି । ପୁନଶ୍ଚ ପଞ୍ଚ ଦେବତାର ଉପାସନା ଉତ୍କଳରେ ବହୁକାଳରୁ ପ୍ରଚଳିତ ହୋଇ ଆସୁଥିବାରୁ ପଞ୍ଚ ଦେବତାଙ୍କ ନାମାନୁସାରେ ପଞ୍ଚ କ୍ଷେତ୍ର ମଧ୍ୟ ଏହି ଉତ୍କଳରେ ହିଁ ପ୍ରତିଷ୍ଠିତ ।

ନୀଳାଚଳସ୍ଥ ପୁରୁଷୋତ୍ତମ କ୍ଷେତ୍ର ନାରାୟଣ କ୍ଷେତ୍ର । ଭୁବନେଶ୍ୱର ଶୈବ କ୍ଷେତ୍ର । କୋଣାର୍କ ଅର୍କ କ୍ଷେତ୍ର । ଯାଜପୁର ଶାକ୍ତ କ୍ଷେତ୍ର ଓ ମହାବିନାୟକ ଗଣେଶଙ୍କ କ୍ଷେତ୍ର ରୂପରେ ବିରାଜିତ । ଭାରତର ଅନ୍ୟ କୌଣସି ପ୍ରଦେଶରେ ଏପରି ପଞ୍ଚ କ୍ଷେତ୍ରର ସମାହାର ନାହିଁ । ପଞ୍ଚ କ୍ଷେତ୍ରର ବିହାର ସ୍ଥଳୀ ଏହି ଉତ୍କଳ ଅତି ପୁଣ୍ୟମୟ ସ୍ଥାନ ଏଥିରେ ଆଉ ସନ୍ଦେହ କଣ ଅଛି ? ଏହି କ୍ଷେତ୍ରକୁ ସାରାଭାରତ ବର୍ଷର ବହୁ ମନୀଷୀ, ଯୋଗୀ, ସାଧକ, ଭକ୍ତ, ଦାର୍ଶନିକ ଓ ଧର୍ମପ୍ରଚାରକ ଆସି ଏ ଧର୍ମକୁ ଯେପରି ପରିପୁଷ୍ଟ କରିଛନ୍ତି ସେମାନଙ୍କ ସ୍ୱ ସ୍ୱ ଧର୍ମ ଓ ମତକୁ ସେହିପରି ଉଜ୍ଜୀବିତ ଓ ରସାଣିତ କରି ଅଛନ୍ତି । ତେଣୁ ଏ ଜଗନ୍ନାଥ ଧର୍ମ ଏକ ସମନ୍ୱୟାତ୍ମକ ଧର୍ମ । ସକଳ ଧର୍ମର ସାର ବା ନିକର୍ଷରେ ପରିପୁଷ୍ଟ ଏହି ଧର୍ମ ସନାତନ ହିନ୍ଦୁ ଧର୍ମର ବିଜୟ ବୈଜୟନ୍ତୀ ଉଡ଼ାଉଅଛି । ଜଗନ୍ନାଥ ଧର୍ମ କହିଲେ ଜଗନ୍ନାଥ ପୀଠ ପ୍ରତିଷ୍ଠିତ ଧର୍ମକୁ ହିଁ ବୁଝିବାକୁ ପଡ଼ିବ ।

ଏହି ଧାମରେ ସର୍ବ ଧର୍ମ ଓ ସର୍ବୋପାସନାର ସମନ୍ୱୟ ସଂଘଟିତ ହେଲାଭଳି ସର୍ବ ଦର୍ଶନର ସମନ୍ୱୟ ମଧ୍ୟ ସଂସାଧିତ ହୋଇଅଛି । ଏହାଙ୍କର ପୂଜା ଏବଂ ପ୍ରଚଳିତ ନୀତି ପଦ୍ଧତିରେ ଅଭେଦ, ଭେଦ, ଭେଦାଭେଦ ଓ ଅଚିନ୍ତ୍ୟଭେଦାଭେଦାଦି ଦର୍ଶନ ସର୍ବଥା ପ୍ରତିଷ୍ଠିତ । ମହାପ୍ରସାଦ ଅନ୍ନାଦିରେ ଅଭେଦଭାବ । ନୈବେଦ୍ୟ ସାମଗ୍ରୀରେ ନିବେଦନ ପୂର୍ବରୁ ଭେଦଭାବ । ପୂଜୋପ-

ଯୋଗୀ ଆଣିତ ଜଳରେ ଭେଦାଭେଦ ଭାବ ( ଶୂଦ୍ର ଜଳ ଆଣେ କିଂତୁ ଗରବଡ଼ୁ ସେଥିରୁ ଜଳଆଣି ସିଂହାସନରେ ରଖେ) ।

ବିଶ୍ୱାବସୁ ବଂଶର ପ୍ରତୀକ ରୂପେ ଦୈତାମାନେ ଏହି ମୂର୍ତ୍ତି-ମାନଙ୍କର ବିଗ୍ରହ ସଂପାଦକ ଓ ସଂରକ୍ଷକ ଏବଂ ନବକଳେବରୀ-ହିରେ ଏହାଙ୍କ ସହିତ ସମଗୋତ୍ରୀଭାବାପନ୍ନ ହେବା, ପରନ୍ତୁ ନୈବେଦ୍ୟ ଉପଯୋଗୀ ବେଶ ଭୂଷାଦିରେ ଅନଧିକୃତ ରହିବା ଦ୍ୱାରା ଅଚିନ୍ତ୍ୟ ଭେଦାଭେଦ ଭାବର ସୂଚନା ଦେଉଅଛି । ପୁନଶ୍ଚ ସେହି ଏକ ଦେବତା ଜଗନ୍ନାଥ ବିଭିନ୍ନ ପରିବେଶରେ ଯାତ୍ରାଦିରେ **ପଞ୍ଚ** ଦେବତାଙ୍କ ରୂପ ଧାରଣ କରି ସତେ କି ସର୍ବଧର୍ମ ବା ସର୍ବୋପାସନାର ପରିଚୟ ଦେଉ ଅଛନ୍ତି । ରତ୍ନ ବେଦୀରେ ସେ **ନାରାୟଣ**, ସ୍ନାନ ବେଦୀରେ ସେ **ଗଣେଶ**, ନବ କଳେବରରେ ସେ **ରୁଦ୍ର**, ଶୟନ ଯାତ୍ରାରେ ସେ **ଦୁର୍ଗା**, ଆଉ ରଥା ରୂଢ଼ସ୍ଥ **ଜଗନ୍ନାଥ** ହେଉଛନ୍ତି **ସର୍ଯ୍ୟ ନାରାୟଣ** ବା **ସୂର୍ଯ୍ୟ** । ସମଗ୍ର **ଭାରତ** ବର୍ଷରେ ଅଧୂନା ପୂଜିତ କୌଣସି ଦେବତା ଏହିପରି ବିବିଧ ରୂପ ଧାରଣ କରି ସର୍ବ ଧର୍ମ ବା ସର୍ବୋପାସନାର ନିଦର୍ଶନ ଦେଉ ନାହାନ୍ତି ? ଏହାହିଁ ଏହି କ୍ଷେତ୍ର ବା ଏହି ଦେବତାର ଆଉ ଏକ ଅନ୍ୟତମ ଶ୍ରେଷ୍ଠ ବୈଶିଷ୍ଟ୍ୟ ।

ଏହି ଧାମର ଦେବତାଙ୍କ ସ୍ଥିତି, ଦର୍ଶନ, ମୂର୍ତ୍ତିତତ୍ତ୍ୱ ଯେପରି ବୈଚିତ୍ର୍ୟମୟ ତାହାକଂର ଉତ୍ସବାଦି ମଧ୍ୟ ସେହିପରି ରହସ୍ୟମୟ । ବାରମାସରେ ତେର ପର୍ବ ଏଠାରେ ହିଁ ଅନୁଷ୍ଠିତ ହୁଏ । ଶାସ୍ତ୍ରୀୟ ମତରେ ଦ୍ୱାଦଶ ଯାତ୍ରା ବିଧି ଏଠାରେ ହିଁ ଆଚରିତ ।

ଚଳିତ ବର୍ଷ ଜଗନ୍ନାଥଙ୍କ ନବ କଳେବର ଅନୁଷ୍ଠିତ ହେଉଅଛି । ଏହି ବିଧି ଯେପରି ବୈଚିତ୍ର୍ୟମୟ ଦାରୁଆନୟନ ପ୍ରଥା ସେହିପରି ଅସାଧାରଣ ଓ ଅନନ୍ୟ ।

# ନବ କଳେବର

ଚାନ୍ଦ୍ରମାନ ଓ ସୌରମାନ ବର୍ଷ ମଧ୍ୟରେ ସମତା ରକ୍ଷା କରିବା ସକାଶେ ପ୍ରତି ତିନ ବର୍ଷରେ ଏକ ଚାନ୍ଦ୍ରମାନ ମାସକୁ ଗଣନାରୁ ବାଦ ଦିଆଯାଏ । ଏହାକୁ ଅଧିମାସ କୁହାଯାଏ । ସ୍ମାର୍ତ୍ତମାନେ ଏହି ମାସକୁ **ମଳମୂତ୍ର** ବା **ମଳମାସ** ବୋଲି ଅଭିହିତ କରିଥାନ୍ତି । ଲୌକିକ ଚଳଣିରେ ଏହି ମଳ ମାସରେ କୌଣସି ଶୁଭକାର୍ଯ୍ୟ ହୁଏନାହିଁ । କିନ୍ତୁ ସାତ୍ତ୍ୱିକ ସ୍ମୃତି ସମୂହ ଏହି ଅଧିମାସକୁ ପରମାର୍ଥ ସିଦ୍ଧିପାଇଁ ପ୍ରକୃଷ୍ଟ ମାସରୂପେ ଗ୍ରହଣ ଓ ବର୍ଣ୍ଣନା କରିଛନ୍ତି । ସେମାନଙ୍କ ମତରେ ଏହିମାସ ହେଉଛି ପୁରୁଷୋତ୍ତମ ମାସ । ଯେଉଁ ବର୍ଷ ଆଷାଢ଼ ମାସରେ ଏହି ଅଧିମାସ ପଡ଼େ ବା ଦୁଇଟି ଆଷାଢ଼ ହୁଏ, ସେହିବର୍ଷ ପୁରୁଷୋତ୍ତମ କ୍ଷେତ୍ରର ଶ୍ରୀ ବିଗ୍ରହ ମାନଙ୍କର ନବକଳେବର ଅନୁଷ୍ଠିତ ହୋଇଥାଏ । ଏହା ସାଧାରଣତଃ ପ୍ରତି ବାରବର୍ଷରେ ଥରେ ଆସେ । ଚଳିତବର୍ଷ ୧୯ ବର୍ଷପରେ ଦ୍ୱିଆଷାଢ଼ରେ ଏହି ଅଧିମାସ ପଡ଼ୁଅଛି । ଚୈତ୍ର ମାସ ଶୁକ୍ଳପକ୍ଷର ଦଶମୀ ତିଥିରେ ଗଜପତି ମହାରାଜାଙ୍କର ଆଜ୍ଞାପାଇ ବିଦ୍ୟାପତି ଓ ବିଶ୍ୱାବସୁ ବଂଶର ନୈଷ୍ଠିକ ବ୍ୟକ୍ତିମାନେ ଦାରୁ ଅନ୍ୱେଷଣ ଉଦ୍ଦେଶ୍ୟରେ ଯିବାପାଇଁ ବିଧି ବିଧାନ ଆରମ୍ଭ କରନ୍ତି । ଚୈତ୍ରର ଶୁକ୍ଳ ଦଶମୀରେ ଶ୍ରୀଜଗନ୍ନାଥାଦି ବିଗ୍ରହମାନଙ୍କର ଦ୍ୱିପ୍ରହର ଧୂପ ଶେଷ ହେଲାପରେ, ପତି ମହାପାତ୍ର ଦେବତାମାନଙ୍କ ଠାରୁ ଆଜ୍ଞାମାଳ ଆଣିଥାନ୍ତି । ଉକ୍ତ ଆଜ୍ଞାମାଳକୁ ପତିମହାପାତ୍ରଙ୍କ ସମେତ ଗୁରୁଜନ ଦଇତାପତି ଗ୍ରହଣ କରନ୍ତି । ଏହାପରେ ସମସ୍ତେ ଅନବସର ପିଣ୍ଡିକୁ ଆସି ଶାଢ଼ୀ ବାନ୍ଧନ୍ତି । ଭିତରଚ୍ଛ ମହାପାତ୍ର ଏମାନଙ୍କୁ ଶାଢ଼ି ଦିଅନ୍ତି । ଏମାନଙ୍କ ସହିତ ୨୩ ଜଣ ଦଇତାପତି, ଦେଉଳ କରଣ,ତଢ଼ାଉ, ଲେଙ୍କା, ଗୁରୁଜଣ ମହାରଣା ଏ ସମସ୍ତେ



ଶ୍ରୀ ଜଗନ୍ନାଥଙ୍କ ଦାରୁରେ ଥିବା ଚକ୍ର ଚିହ୍ନ

ଜଗନ୍ନାଥ ବଳଭଦ୍ରମାନଙ୍କୁ ଯାଇ ଯାତ୍ରା ପୂର୍ବରୁ ଅପେକ୍ଷା କରନ୍ତି । ଲେଙ୍କା ଚନ୍ଦନ ଧାରଣ କରି ଯାଆନ୍ତି । ଆଚାର୍ଯ୍ୟ ରୂପେ ବରଣ ହୋଇଥିବା ଦେଉଳ ପୁରୋହିତ ଓ ଅନ୍ୟ ଗୁରୁଜଣ ଦୋଦାଧ୍ୟାୟୀ ବ୍ରାହ୍ମଣ ଏମାନଙ୍କ ସହିତ ମିଳିତ ହୁଅନ୍ତି । ଗଜପତି ମହାରାଜା ଗୁଆ, ନଡ଼ିଆ, ପତାକା, ଅରୁଆ ଚାଉଳ ପ୍ରଭୃତି ଅନୁକୂଳ ମାଙ୍ଗଳିକ ଦ୍ରବ୍ୟମାନ ବିଶ୍ୱାବସୁଙ୍କ ହସ୍ତକୁ ଠେକ ଦେଇ ସଂକଳ୍ପ ପୂର୍ବକ ଦାରୁ ଅନ୍ୱେଷଣ କରିବା ପାଇଁ ଅନୁରୋଧ କରନ୍ତି ।

ଆଚାର୍ଯ୍ୟ ରୂପେ ବରଣ ହୋଇଥିବା ବିଶ୍ୱାବସୁ ଗୁଆ ନେଇ ରାଜାଙ୍କର ଅନୁରୋଧ ରକ୍ଷା କରନ୍ତି । ଜଗନ୍ନାଥ ବଲ୍ଲଭରେ ଦୁଇଦିନ ରହିଲା ପରେ ଦାରୁ ଅନ୍ୱେଷଣରେ ବିଭିନ୍ନ ଅରଣ୍ୟକୁ ଯାଆନ୍ତି । ଏହି ଅନୁକୂଳ ଯାତ୍ରାରେ ରାଜପ୍ରତିନିଧି, ଚତୁର୍ବେଦୀୟ ବ୍ରାହ୍ମଣ, ରାଜପୁରୋହିତ ଓ ଶିଳ୍ପ ବିଦ୍ୟା ନିପୁଣ ସୂତ୍ରଧରମାନେ ମହାପ୍ରଭୁଙ୍କର ଆଜ୍ଞାମାଳାରେ ଭୂଷିତହୋଇ ଯଜ୍ଞ ସମ୍ଭାର ସହିତ ଯାତ୍ରା ଆରମ୍ଭ କରନ୍ତି । ଯେଉଁ ବୃହତ୍ ଚତୁଃଶାଖା ବିଶିଷ୍ଟ ନିମ୍ବବୃକ୍ଷ କାଠ ପତଙ୍ଗାଦି ଦ୍ୱାରା ଦଂଷ୍ଟ ହୋଇ ନ ଥିବ, ଯାହାର ଶାଖାପତ୍ରରେ କୌଣସି ପକ୍ଷୀ ବସା ବାନ୍ଧି ନ ଥିବ ଏବଂ ଯାହାର ମୂଳରେ ବିଷଧର ସର୍ପ ଅବସ୍ଥାନ କରୁଥିବ ଓ ଏହାର ନିକଟରେ ନଦୀ, ଶ୍ମଶାନ ଥିବ, ଉକ୍ତ ବୃକ୍ଷହିଁ ଶ୍ରୀ ବିଗ୍ରହମାନଙ୍କର ନିର୍ମାଣ ପାଇଁ ଉପଯୁକ୍ତ ବିବେଚିତ ହେବ । ଉକ୍ତ ପ୍ରକାର ବୃକ୍ଷର ସନ୍ଧାନ ମିଳିଲେ ମନ୍ଦିରର ଦଇତାପତିମାନେ ଏହି ବୃକ୍ଷରେ ମହାପ୍ରଭୁଙ୍କର ଆଜ୍ଞାମାଳ ପ୍ରଦାନ କରନ୍ତି ଏବଂ ଏହି ବୃକ୍ଷ ମୂଳରେ ବନଯାଗ-ଉତ୍ସବ କରିବା ପାଇଁ ଯଜ୍ଞ-ଶାଳା ଓ ମଣ୍ଡପ ପ୍ରଭୃତି ନିର୍ମାଣ କରନ୍ତି । ଏଠାରେ ବନଯାଗ ଅନୁଷ୍ଠିତ ହୁଏ । ଉକ୍ତ ଯଜ୍ଞ-ଉତ୍ସବରେ ବ୍ରହ୍ମା, ଅଧ୍ୱର୍ଯ୍ୟୁ, ହୋତା ଓ ଉଦ୍‌ଗାତାମାନେ ଯଜ୍ଞ

ପରିଚାଳନା କରନ୍ତି । ରାଜପ୍ରତିନିଧି, ବରଣ ହୋଇଥିବା ବ୍ରାହ୍ମଣମାନେ, ପୁଷ୍ପକାଚାର୍ଯ୍ୟ ଓ ଅନ୍ୟାନ୍ୟ ସେବାୟତମାନେ ଏହି ଯଜ୍ଞରେ ଉପସ୍ଥିତ ରହନ୍ତି । ବିଦ୍ୟାପତି, ବିଶ୍ୱାବସୁ ଓ ବିଶ୍ୱକର୍ମା ଉକ୍ତ ଅନୁଷ୍ଠାନରେ ନିଷ୍ଠାପୂର୍ବକ ଯୋଗ ଦିଅନ୍ତି ଏବଂ ଯଜ୍ଞସ୍ଥଳରେ ଯଜ୍ଞଶାଳାରେ ଶୟନ କରି ସ୍ୱପ୍ନାବତୀ ମହାମାୟୀଙ୍କୁ ଜପ ଓ ଧ୍ୟାନ କରନ୍ତି । ଏହି ସମୟରେ ଦଇତାପତିମାନେ ନିର୍ଜଳ ଉପବାସ କରି ମହାନୃସିଂହ ମନ୍ତ୍ର ଜପ କରନ୍ତି । ଇନ୍ଦ୍ରଦ୍ୟୁମ୍ନଙ୍କ ସମୟରେ ଯେଉଁ ବିଦ୍ୟାପତି, ବିଶ୍ୱାବସୁ ଓ ବିଶ୍ୱକର୍ମା ଏହି ଶ୍ରୀ ବିଗ୍ରହର ନିର୍ମାଣ ଓ ପୂଜାବିଧି ପ୍ରଚଳନର ସ୍ଥାପକ ରୂପେ ପୁରାଣ ଏବଂ କିମ୍ବଦନ୍ତୀରେ ବର୍ଣ୍ଣିତ ହୋଇଛନ୍ତି, ସେହିମାନଙ୍କର ବଂଶଧର ରୂପେ ଖ୍ୟାତ ହୋଇ-ଥିବା ଦଇତାପତି ଓ ମହାରଣାମାନେ ବିଦ୍ୟାପତି, ବିଶ୍ୱାବସୁ ଓ ବିଶ୍ୱକର୍ମା ପଦବୀରେ ବରଣ ପାଇଥାନ୍ତି । ପରଦିନ ପ୍ରଭାତରୁ ସ୍ନାନବିଧି ସମାପନ କରି ପ୍ରଥମେ ବିଦ୍ୟାପତି ସୁନାର କୁରାଢ଼ିରେ ଦାରୁଚ୍ଛେଦନ ଆରମ୍ଭ କରନ୍ତି । ତତ୍ପରେ ବିଶ୍ୱାବସୁ ଓ ବିଶ୍ୱକର୍ମା ଯଥାକ୍ରମେ ରୂପା ଓ ଲୁହା ନିର୍ମିତ କୁରାଢ଼ୀ ସାହାଯ୍ୟରେ ଉକ୍ତ ଦାରୁକୁ ଛେଦନ କରନ୍ତି । ଏହି ଛେଦନ କାର୍ଯ୍ୟ ଆରମ୍ଭ ହେଲାପରେ ଶାନ୍ତି ସ୍ୱସ୍ତ୍ୟୟନ ଓ ବ୍ରାହ୍ମଣ ଭୋଜନ ପ୍ରଭୃତି ଅନୁଷ୍ଠିତ ହୁଏ । ଏହି ଦାରୁ ଛେଦନ କାର୍ଯ୍ୟରେ ଜନସାଧାରଣ ସାହାଯ୍ୟ କରିଥାନ୍ତି ।

ନବକଳେବରର ବିବରଣ ପ୍ରତିବର୍ଷ ମାଦଳା ପାଂଜିରେ ଲିପିବଦ୍ଧ ହେବାର ପ୍ରଥା ଅଦ୍ୟାପି ପ୍ରଚଳିତ । ଲୋକମାନଙ୍କର ମଙ୍ଗଳପାଇଁ ସ୍ୱୟଂ ଦାରୁବ୍ରହ୍ମ ଏହି ଅଦ୍ଭୁତ ଲୀଳା ପ୍ରକଟ କରିଥାନ୍ତି । ଉକ୍ତ ଦାରୁର ସନ୍ଧାନ ପାଇଁ ଦୈବୀ ଶକ୍ତିର ଅନୁଗ୍ରହ ଲାଭ କରିବାକୁ ହୁଏ । ଏଥିପାଇଁ ଦାରୁର ସନ୍ଧାନରେ ଯାତ୍ରା କରିବା ପୂର୍ବରୁ ମହାମାୟା ସ୍ୱରୂପିଣୀ କାକଟପୁରସ୍ଥ ମଙ୍ଗଳାଦେବୀଙ୍କ

ନିକଟରେ ଦଇତାପତିମାନେ ଆଶ୍ରିତ ହୁଅନ୍ତି ଏବଂ ଉକ୍ତ ଦେବୀଙ୍କର ସ୍ୱପ୍ନାଦେଶ ପ୍ରାପ୍ତ ହୋଇ ଦାରୁର ସନ୍ଧାନ କରନ୍ତି । ବସ୍ତୁତଃ ଯୋଗମାୟା ଦ୍ୱାରା ସମାବୃତ ଏହି ଦାରୁ ରହସ୍ୟ ମାନବଶକ୍ତିର ଦୁରଧିଗମ୍ୟ । ଭକ୍ତି, ଆବେଶ ଓ ରସବତ୍ତା ବ୍ୟତୀତ କେବଳ ଯୁକ୍ତି ତର୍କଣା ବା ପ୍ରମାଣ ଦ୍ୱାରା ଏହି କରୁଣାମୟୀ ଲୀଳାକୁ ବୁଝିବା କଷ୍ଟକର ।

ମାଦଳା ପାଂଜିର ବିବରଣୀରୁ ଜଣାଯାଏ ଯେ ଜଗନ୍ନାଥଙ୍କର ପ୍ରଧାନ ସେବକ ପୁରୀର ଗଜପତି ମହାରାଜା ଗର୍ଭ ମନ୍ଦିରର ମୁଖ୍ୟସେବକ ପତିମହାପାତ୍ରଙ୍କୁ ଦାରୁବ୍ରହ୍ମଙ୍କର ଏହି ନବକଳେବର କେବେ ହେବ ତାହା ପଚାରନ୍ତି । ଯେତେବେଳେ ସ୍ୱୟଂ ଗଜପତି ମହାରାଜା ଦାରୁବ୍ରହ୍ମଙ୍କର ଲୀଳାମୟ ବାସନା ମୁଖ୍ୟ ସେବକ-ମାନଙ୍କ ମାଧ୍ୟମରେ ଜାଣିପାରନ୍ତି ସେତେବେଳେ ସେ ବିଶ୍ୱାବସୁ ଓ ବିଦ୍ୟାପତିଙ୍କର ବଂଶଧର ରୂପେ ଖ୍ୟାତ ଭକ୍ତଶ୍ରେଷ୍ଠ ଦଇତାପତି-ମାନଙ୍କୁ ଦାରୁର ଅନୁସନ୍ଧାନ କରିବା ପାଇଁ ନିର୍ଦ୍ଦେଶ ଦିଅନ୍ତି । ଏହି ସମସ୍ତ କାର୍ଯ୍ୟ ମୂଳରେ ସ୍ୱପ୍ନା ଦେଶ ଭଳି ଅଲୌକିକ କ୍ରିୟା କାର୍ଯ୍ୟ କରିଥାଏ । ସେବକ ମହାପାତ୍ର କିମ୍ବା ଗଜପତି ଏଥିପାଇଁ ଜଗନ୍ନାଥଙ୍କର ସ୍ୱପ୍ନାଦେଶକୁ ଅପେକ୍ଷା କରନ୍ତି ।

ପ୍ରଚଳିତ ପରଂପରା ଅନୁସାରେ ନବକଳେବରର ଅନୁଷ୍ଠାନ ପୂର୍ବରୁ ଗଜପତିଙ୍କ ଅଧ୍ୟକ୍ଷତାରେ ଏକ ସଭା ଆହୂତ ହୋଇଥାଏ । ଉକ୍ତ ସଭାରେ ପ୍ରଧାନ ପଣ୍ଡାସେବକ, ବିଭିନ୍ନ ମଠର ମହନ୍ତ, ବିଶ୍ୱାବସୁ ବଂଶୋଦ୍ଭବ ଦଇତାଗଣ, ବିଦ୍ୟାପତି ଓ ଛତିଶ ପାଟକର ଜନସାଧାରଣ ଯୋଗ ଦିଅନ୍ତି । ଉକ୍ତ ସଭାରେ ମହାପ୍ରଭୁଙ୍କର ନବକଳେବର ଗ୍ରହଣର ଇଚ୍ଛା ସମ୍ପର୍କରେ ସମସ୍ତଙ୍କୁ

ଅବସ୍ଥିତ ଜଗନ୍ନାଥ ଏବଂ ମହାରାଜା ଗଜପତି ସେବକ ଓ ଦଇତାପତିମାନଙ୍କୁ ନବକଳେବରର ସନ୍ଧାନ କରିବା ପାଇଁ ଶ୍ରୀମୂର୍ତ୍ତିମାନଙ୍କର ଆଜ୍ଞାମାଳ ପ୍ରଦାନ କରନ୍ତି ।



( ବୃଦ୍ଧ ଦଇତାପତି ବସି ଶୁଣୁଛନ୍ତି କେଉଁଠାରୁ ଦାରୁ ମିଳିବ )

କାକଟପୁରସ୍ଥ ମଙ୍ଗଳା ଦେବୀଙ୍କ ପାଖରେ ମାର୍ଜ୍ଜନା ଓ ପୂଜାବିଧି ସମାପନକରି ମହାମାୟାଙ୍କ କୃପାଭିକ୍ଷା ଲାଭ କରନ୍ତି ଓ ସେଠାରୁ ଚାରୋଟି ବାଡ଼ ବା ଦଳରେ ବିଭକ୍ତ ହୋଇ ଦାରୁ ଅନ୍ୱେଷଣରେ ଯାତ୍ରା କରନ୍ତି । ପ୍ରତ୍ୟେକ ବାଡ଼ର ମୁଖ୍ୟ ଦଇତା-ପତିଙ୍କୁ ବାଡ଼ଗ୍ରାହୀ କୁହାଯାଏ ଓ ଏହି ଚାରିଜଣ ବାଡ଼ଗ୍ରାହୀ ଦାରୁଙ୍କୁ ଶ୍ରୀମନ୍ଦିର ପର୍ଯ୍ୟନ୍ତ ଆଣିବାର ଦାୟିତ୍ୱ ବହନ କରନ୍ତି । ପ୍ରତ୍ୟେକ ଦାରୁ ବୃକ୍ଷ ନିକଟରେ ଦଇତାମାନେ ଶବର ପଲ୍ଲୀ ନିର୍ମାଣ କରି ତିନିଦିନ ବାସ କରନ୍ତି ।

ବୃକ୍ଷର ସନ୍ଧାନ ଓ ବନଯୋଗ ସମ୍ବନ୍ଧରେ ପୂର୍ବରୁ ଧାରଣା ଦିଆଯାଇଛି । ଦାରୁ-ବୃକ୍ଷର ଲକ୍ଷଣ ଗୁଡ଼ିକୁ ଦଇତାପତିମାନେ ଉତ୍ତମରୂପେ ପରୀକ୍ଷା କରନ୍ତି । ସୂତ ସଂହିତାରେ ଯେଉଁ ସମସ୍ତ ଦାରୁ ଲକ୍ଷଣ ବର୍ଣ୍ଣିତ ଅଛି , ସେଥିରୁ ଜଣାଯାଏ ଯେ, ଶ୍ରୀଜଗନ୍ନାଥ ଦେବଙ୍କର ଦାରୁ ସାମାନ୍ୟ କୃଷ୍ଣବର୍ଣ୍ଣ, ଶ୍ରୀବଳଭଦ୍ରଙ୍କର ଦାରୁ ଓ ସୁଭଦ୍ରାଙ୍କର ଦାରୁ ଯଥାକ୍ରମେ ଶ୍ୱେତବର୍ଣ୍ଣ ଓ ରକ୍ତବର୍ଣ୍ଣ

ହେବା ଆବଶ୍ୟକ । ସେହି ବୃକ୍ଷ ଗୁଡ଼ିକରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମର ଚିହ୍ନ ରହିଥିବା ପ୍ରୟୋଜନ ।

ପ୍ରତ୍ୟେକ ବୃକ୍ଷରେ ତିନି, ପାଞ୍ଚ ବା ସାତୋଟି କରି ଶାଖା ଏବଂ ବୃକ୍ଷ ଗୁଡ଼ିକର ସ୍ୱାଦ ତିକ୍ତ ପରିବର୍ତ୍ତେ ଅଳ୍ପ ମଧୁର ହୋଇ-ଥିବ । ବୃକ୍ଷ ଗୁଡ଼ିକରେ ବଜ୍ରପାତ ହୋଇ ନ ଥିବ କିମ୍ବା କୌଣସି ପକ୍ଷୀ ବସା ବାନ୍ଧି ନ ଥିବ । ହସ୍ତୀ ଶୁଣ୍ଢଦ୍ୱାରା କ୍ଷତ ବିକ୍ଷତ ହୋଇ ନ ଥିବ । ଏହି ବୃକ୍ଷର ମୂଳ ଦେଶରେ ବା ନିକଟସ୍ଥ ଉଇ ହୁଙ୍କାର ଅଭ୍ୟନ୍ତରରେ ବିଷଧର ସର୍ପ ବାସ କରୁଥିବେ, ଏହି ବୃକ୍ଷଗୁଡ଼ିକ ତିନୋଟି ପର୍ବତ, ତିନୋଟି ନଦୀ ବା ତିନୋଟି ମାର୍ଗର ସଂଯୋଗ ସ୍ଥଳରେ ଅବସ୍ଥିତ ହୋଇଥିବେ । ଏଗୁଡ଼ିକ ଦେଖିବାକୁ ସରଳ ଓ ଆକର୍ଷଣୀୟ ହୋଇଥିବେ ।

ପ୍ରତ୍ୟେକ ଦାରୁ ବୃକ୍ଷ ନିକଟରେ ତିନିଦିନ ଧରି ଯଜ୍ଞ ଅନୁଷ୍ଠାନ କରାଯାଏ । ଦାରୁ ବୃକ୍ଷ ସ୍ଥିର ହେଲା ପରେ ମହା-ପ୍ରଭୁଙ୍କର ଆଜ୍ଞାମାଳ ସେହି ବୃକ୍ଷରେ ଦିଆଯାଏ । ପୂର୍ବରୁ କୁହାଯାଇଛି ଯେ ଯଜ୍ଞ ଶେଷରେ ବ୍ରାହ୍ମଣ ମାନଙ୍କର ବେଦଧ୍ୱନି, ଭଜନ ଓ କୀର୍ତ୍ତନର ଉତ୍ତରଳ ଆବେଶ ମଧ୍ୟରେ ବିଦ୍ୟାପତି ସ୍ୱର୍ଣ୍ଣ କୁଠାରରେ ଦାରୁଛେଦନ ଆରମ୍ଭ କରନ୍ତି । ଏହାପରେ ବିଶ୍ୱାବସୁ ରୌପ୍ୟ କୁଠାର ଏବଂ ବିଶ୍ୱକର୍ମା ଲୌହ କୁଠାରରେ ଦାରୁ ଛେଦନ କରନ୍ତି । ଏ ସମସ୍ତ କାର୍ଯ୍ୟ ମଧ୍ୟରେ ଅହରହ ବେଦଧ୍ୱନି, ଶାନ୍ତି ସ୍ୱସ୍ତ୍ୟୟନ, ମନ୍ତ୍ରପାଠ ଓ ଭଜନ କୀର୍ତ୍ତନ ଆଦି ଲାଗି ରହିଥାଏ । ଦାରୁ ଭୂତଳଶାୟୀ ହେଲେ ଏହାକୁ ଚତୁଃସମ କରାଯାଏ ଏବଂ ଶାଖା, ପ୍ରଶାଖା ଓ ପତ୍ର ସବୁକୁ ଗୋଟିଏ ଗର୍ତ୍ତରେ ପୋତି ପକାଯାଏ । ଏହାପରେ ନୂତନ ନିର୍ମିତ ଶକଟ ସାହାଯ୍ୟରେ ଉକ୍ତ ଦାରୁମାନଙ୍କୁ ନବକ୍ଷେତ୍ର

ବସ୍ତ୍ରରେ ଆଚ୍ଛାଦିତ କରି ଗନ୍ଧ, ମାଲ୍ୟ ଓ ପୁଷ୍ପରେ ସଜ୍ଜିତ କରି ଶ୍ରୀମନ୍ଦିର ଅଭିମୁଖେ ଅଣାଯାଏ । ଦାରୁଙ୍କୁ ଆଣିବା ପାଇଁ ଯେଉଁ ନୂତନ ଶକଟ ପ୍ରସ୍ତୁତ କରାଯାଏ, ତାହା ତ୍ରିଚକ ବିଶିଷ୍ଟ । ଏହି ଶକଟର ଚକ, ଦଣ୍ଡା ଓ ଅଖ ଯଥାକ୍ରମେ ବର, କେନ୍ଦୁ ଓ ତେନ୍ତୁଳି, ବା ବିଲ୍ୱ କାଠରେ ପ୍ରସ୍ତୁତ କରାହୁଏ । ଦାରୁ ଆସୁଥିବା ମାର୍ଗରେ ଭଜନ, କୀର୍ତ୍ତନ ଓ ମନ୍ତ୍ର ଧ୍ୱନି ଉଚ୍ଚାରିତ ହେଉଥାଏ ଏବଂ ଶଙ୍ଖ, କାହାଳୀ ମୃଦଙ୍ଗ ପ୍ରଭୃତି ମାଙ୍ଗଳିକ ବାଦ୍ୟଧ୍ୱନି ହେଉଥାଏ । ଦାରୁ ଆଣିବା ସମୟରେ ପଥପାର୍ଶ୍ୱରେ ଗ୍ରାମ-ବାସୀଗଣ ଫଳମୂଳ ଓ ବିଭିନ୍ନ ପୂଜା ସମ୍ଭାର ନେଇ ଉପସ୍ଥିତ ହୁଅନ୍ତି ଓ ଦଇତାପତିମାନେ ଏ ସମସ୍ତ ନୈବେଦ୍ୟ କରନ୍ତି । ପ୍ରାୟ ହଜାର ହଜାର ବ୍ୟକ୍ତି ଦାରୁ ସହିତ କୀର୍ତ୍ତନ ଭଜନ କରି ପାଞ୍ଚ ଦିନରୁ ଆଠଦିନ ମଧ୍ୟରେ ଶ୍ରୀକ୍ଷେତ୍ରରେ ଉପସ୍ଥିତ ହୁଅନ୍ତି । ପ୍ରଥମେ ଶ୍ରୀ ସୁଦର୍ଶନଙ୍କର ଦାରୁ, ତତ୍ପରେ ଶ୍ରୀ ବଳରାମଙ୍କର, ତାପରେ ସୁଭଦ୍ରାଙ୍କର ଓ ଶେଷରେ ଶ୍ରୀ ଜଗନ୍ନାଥଙ୍କ ଦାରୁ ଶ୍ରୀକ୍ଷେତ୍ରକୁ ଅଣାଯାଏ । ସମସ୍ତ ଦାରୁ ଜଗନ୍ନାଥ ସଡ଼କ ଦେଇ ଅଠର ନଳା ପାଖରେ ପହଞ୍ଚିଲେ ଗଜପତିଙ୍କୁ ଶୁଭ ସମ୍ବାଦ ଦିଆଯାଏ । ମହାରାଜା ଗଜପତି ହସ୍ତୀ, ଚାମର ବ୍ୟଜନ ପ୍ରଭୃତି ସ୍ୱାଗତ ଉପଚାର ସହିତ ସନ୍ଥ ମହନ୍ତମାନଙ୍କୁ ସାଥିରେ ନେଇ ଦାରୁ-ଗୁଡ଼ିକୁ ପାଛୋଟି ଆଣି ଏବଂ ଶ୍ରୀମନ୍ଦିରର ଉତ୍ତର ଦ୍ୱାର ଦେଇ ପ୍ରବେଶ କରାନ୍ତି ଓ କୋଇଲି ବୈକୁଣ୍ଠର [କୈବଲ୍ୟ ବୈକୁଣ୍ଠ] ଦାରୁ ମଣ୍ଡପରେ ଅବସ୍ଥାପିତ କରାନ୍ତି । ଦାରୁଗୁଡ଼ିକ ଶ୍ରୀମନ୍ଦିରରେ ପ୍ରବେଶ କଲାପରେ ପତି ମହାପାତ୍ର ଦାରୁଗୁଡ଼ିକୁ ମହାସ୍ନାନ କରାନ୍ତି ଏବଂ ଗଜପତି ମହାରାଜା ମନ୍ଦିରରେ ବ୍ରାହ୍ମଣ ଭୋଜନ କରାନ୍ତି । ଏ ବର୍ଷ ଠିକ୍ ଉପରୋକ୍ତ ବିଧିମତରେ ସମସ୍ତ କାର୍ଯ୍ୟ ସମାହିତ ହୋଇଅଛି ।

ସ୍ନାନ ପୂର୍ଣ୍ଣିମା ଦିନ ଦେବତାମାନଙ୍କର ସ୍ନାନୋତ୍ସବ ପରେ ଦାରୁ-ମାନଙ୍କୁ ସ୍ନାନ କରାଯାଏ । ଗଜପତି ମହାରାଜା ଏକଶତ ଆଠ ଜଣ ବ୍ରାହ୍ମଣଙ୍କୁ ବରଣ କରି ଏହି ଯଜ୍ଞ ଉତ୍ସବର ଆୟୋଜନ କରନ୍ତି । ଶ୍ରୀମନ୍ଦିରର ସମସ୍ତ ପାର୍ଶ୍ୱଦେବତାଙ୍କ ମନ୍ଦିରରେ ଓ କ୍ଷେତ୍ରସ୍ଥ ବିଭିନ୍ନ ସାହିର ମନ୍ଦିରରେ ବ୍ରାହ୍ମଣମାନେ ବରଣ ରହି ଶାନ୍ତି-ସ୍ୱସ୍ତ୍ୟୟନ କାର୍ଯ୍ୟ କରିଥାନ୍ତି । ଯଜ୍ଞ ଆରମ୍ଭ ଦିନ ମହାରାଜା ବିଶ୍ୱକର୍ମାମାନଙ୍କୁ ଶ୍ରୀ ଜଗନ୍ନାଥଙ୍କର ଆଜ୍ଞାବସ୍ତ୍ର ( ଶାଢ଼ୀ ) ପ୍ରଦାନ କରି ନବ କଳେବରର କାର୍ଯ୍ୟ ନିର୍ବାହକରିବାକୁ ସେମାନଙ୍କୁ ଉଦ୍‌ବୋଧନ ଦିଅନ୍ତି । ଯଜ୍ଞର ପୂର୍ଣ୍ଣାହୁତି ଦିନ ଶୋଉଳ ମାଛକୁ ବଳି ଦେବାର ବିଧି ପ୍ରଚଳିତ ଅଛି । ଯଜ୍ଞ ଆରମ୍ଭ ହେଲାପରେ ସୂତ୍ରଧର ଗଣ ଦାରୁ ମଣ୍ଡପରେ ମୂର୍ତ୍ତି ନିର୍ମାଣ କରନ୍ତି । ଏହି ସମୟରେ ପତି ମହାପାତ୍ର ଓ ବିଶ୍ୱକର୍ମାମାନଙ୍କ ବ୍ୟତୀତ ଅନ୍ୟ କେହି ନିର୍ମାଣ ମଣ୍ଡପକୁ ଯାଆନ୍ତି ନାହିଁ । ସୃଷ୍ଟିସଂହିତାର ପଦ୍ଧତି ଅନୁସାରେ ଶ୍ରୀମୂର୍ତ୍ତିମାନଙ୍କୁ ନିର୍ମାଣ କରାଯାଏ । ଯଜ୍ଞରେ ବେଦଧ୍ୱନି ଓ ବାଦ୍ୟଧ୍ୱନି ମଧ୍ୟରେ ନିର୍ମାଣ କାର୍ଯ୍ୟ ଚାଲିଥାଏ । ଏହି ଯଜ୍ଞର ପୂର୍ଣ୍ଣାହୁତି ତ୍ରୟୋଦଶୀ ଦିନ ଅନୁଷ୍ଠିତ ହୁଏ । ପୂର୍ବରୁ କୋଠ-ମୁଆ ପିଆମାନେ ଗାତ ଖୋଳି ସମାଧି ସ୍ଥାନ ପ୍ରସ୍ତୁତ କରିଥାନ୍ତି । ଦ୍ୱାଦଶୀ ଦିନ ବ୍ରାହ୍ମଣମାନଙ୍କୁ ଗୋଦାନ ଦିଆଯାଏ । ଉକ୍ତଦିନ ଆଗ୍ରୟ୍ୟ ପୂର୍ବୋକ୍ତ ନ୍ୟାସ ଦାରୁକୁ ଦୟିତାପତିଙ୍କୁ ଜିମା ଦିଅନ୍ତି । ବ୍ରହ୍ମରନ୍ଧ୍ରରେ ଦିଆଯିବା ପାଇଁ ୪ ଖଣ୍ଡ ନ୍ୟାସ ଦାରୁ ପ୍ରସ୍ତୁତ କରା-ହୋଇଥାଏ । ଉକ୍ତ ନ୍ୟାସ ଦାରୁକୁ ରଥରେ ବସାଇ ହାଣ୍ଡିଦ୍ୱାରା ମନ୍ଦିରର ଚତୁଃପାର୍ଶ୍ୱରେ ପରିକ୍ରମା କରାଯାଏ । ଏହି ନ୍ୟାସ ଦାରୁ ବ୍ରହ୍ମସ୍ଥଳୀର ଆବରଣ ରୂପେ ବ୍ୟବହୃତ ହୋଇଥାଏ । ପତି ମହାପାତ୍ରଙ୍କ ଠାରୁ ନ୍ୟାସ ଦାରୁକୁ ବିଶ୍ୱାବସୁ ନିଅନ୍ତି ଏବଂ ସେ

ନିର୍ମାଣ ମଣ୍ଡପରେ ବିଶ୍ୱକର୍ମାଙ୍କୁ ବିଅନ୍ତି । ଏଥି ପୂର୍ବରୁ ସବିଧା ପାଞ୍ଚ ଗୋଟି ଗାଈ ରାଜଗୁରୁମାନଙ୍କୁ ଦାନ କରାଯାଏ । ପରଦିନ ତ୍ରୟୋଦଶୀ ପଡ଼େ । ଏହି ଦିନକୁ ମୂର୍ତ୍ତି ନିର୍ମାଣ କାର୍ଯ୍ୟ ସମାପ୍ତ ହୋଇ-ଥାଏ ଓ ଯଜ୍ଞର ପୂର୍ଣ୍ଣାହୂତି ହୁଏ । ସନ୍ଥ, ମହନ୍ତ, ଦଣ୍ଡୀ, ବ୍ରହ୍ମଚାରୀ, ମଠାଧୀଶ, ଛତିଶାନିଯୋଗ ସେବାଯୁତ ଓ ଆଚାର୍ଯ୍ୟ ବ୍ରାହ୍ମଣ-ମାନେ ବରଣ ହୋଇ ଶ୍ରୀମୂର୍ତ୍ତିମାନଙ୍କର ସଂସ୍କାର ଓ ନ୍ୟାସ କରିବାକୁ ନିର୍ମାଣ ମଣ୍ଡପକୁ ଆସନ୍ତି ।

ଆଚାର୍ଯ୍ୟ ରାଜଗୁରୁମାନେ ଖଣ୍ଡୁଆ ଦ୍ୱାରା ସଂପୂର୍ଣ୍ଣ ଆଚ୍ଛାଦିତ ମୂର୍ତ୍ତିଚତୁଷ୍ଟୟକୁ କୁଶାଗ୍ରରେ ସ୍ପର୍ଶ କରି ସଂସ୍କାର ଓ ପ୍ରତିଷ୍ଠା କରନ୍ତି । ଏହି ପ୍ରତିଷ୍ଠା କାର୍ଯ୍ୟ "ହୟଶୀର୍ଷ ପାଞ୍ଚରାତ୍ର ଆଗମ, ବୈଷ୍ଣବ ସ୍ମୃତି ଗ୍ରନ୍ଥ 'ହରି ଭକ୍ତି ବିଳାସ' ଓ ବିଭିନ୍ନ ତନ୍ତ୍ରୋକ୍ତ ଉପଚାର ବିଧିରେ ସମାହିତ ହୋଇଥାଏ । ବିଭିନ୍ନ ସମ୍ଭାରରେ ଯଜ୍ଞ ମଣ୍ଡପ ସୁସଜ୍ଜିତ ହୋଇଥାଏ ଏବଂ ସବିଧି ନୃସିଂହ ମନ୍ତ୍ର ଓ ନ୍ୟାସାଦିରେ ଉପାସନା ଓ ପ୍ରତିଷ୍ଠା ବିଧି ଅନୁଷ୍ଠିତ ହୁଏ । ସୁଦର୍ଶନଙ୍କ ବିଧି ଏଠାରେ ବହୁଳ ଭାବରେ ଆଚରିତ ହୁଏ ଓ ସୁଦର୍ଶନ ଗୋଟିଏ ରଥରେ ବସି ମନ୍ଦିରର ଚତୁଃର୍ଦ୍ଦିଗ ପରିଭ୍ରମଣ କରନ୍ତି । ଏ ପ୍ରଥା ଅପୂର୍ବ ଓ ଅସାଧାରଣ ।

ଏହି ଦିନ ମନ୍ଦିରରେ ବ୍ରାହ୍ମଣ ଭୋଜନର ବ୍ୟବସ୍ଥା ହୁଏ । ସୂତ ସଂହିତାଦି ପ୍ରାଚୀନ ଶାସ୍ତ୍ର ଏବଂ 'ଶ୍ରୀକ୍ଷେତ୍ର' ଓ 'ସୌଭାଗ୍ୟ-ମଂଜୁଷା' ପ୍ରଭୃତି ଗ୍ରନ୍ଥ ପ୍ରଦତ୍ତ ବିବରଣରୁ ଜଣାଯାଏ ଯେ, କୃଷ୍ଣ ଚତୁର୍ଦ୍ଦଶୀ ତିଥିରେ ନବ କଳେବର ଅନୁଷ୍ଠାନର ଗୁରୁତ୍ୱପୂର୍ଣ୍ଣ ବିଧି ଅନୁଷ୍ଠିତ ହୁଏ । ଏହି ଦିନ ଘଟ ପରିବର୍ତ୍ତନ କରାଯାଏ । ପ୍ରଥମେ ହୋମ ଓ ଆହୂତି ଦାନ ପରେ ନୂତନ ମୂର୍ତ୍ତିଗୁଡ଼ିକୁ



ବଡ଼ଦାଣ୍ଡରେ ମାଉସୀମାଙ୍କ ନିକଟରେ ଶୋଭାଯାତ୍ରାରେ ଦାରୁ ଆସୁଛନ୍ତି



ସୁଭଦ୍ରାଙ୍କ ଦାରୁ ଶୋଭାଯାତ୍ରାରେ ଆସୁଛନ୍ତି



ସୁଦର୍ଶନଙ୍କ ଦାରୁ ମାଉସିମା ମନ୍ଦର ନକଟରେ
ଶୋଭାଯାତ୍ରାରେ ଆସୁଛନ୍ତି



ବଳଭଦ୍ରଙ୍କ ଦାରୁ ଶୋଭାଯାତ୍ରାରେ ଆସୁଛନ୍ତି

ବଡ଼ ଦେଉଳର ଅଭ୍ୟନ୍ତରରେ ପ୍ରବେଶ କରାହୁଏ । ଏହିଦିନ ନିଶାର୍ଦ୍ଧରେ ସର୍ବାପେକ୍ଷା ବୃଦ୍ଧ ଦଇତାପତି ନିଜର ହସ୍ତ, ପଦ ଓ ଚକ୍ଷୁକୁ ପଟ୍ଟ ବସ୍ତ୍ରରେ ଉତ୍ତମ ରୂପେ ଆବୃତ କରି ପୁରାତନ କଳେବରରୁ ନୂତନ କଳେବର ମଧ୍ୟକୁ **ବ୍ରହ୍ମକୁ** ସ୍ଥାନାନ୍ତରିତ କରନ୍ତି । ଏହି କ୍ରିୟା ଅତି ଗୋପନ ଓ ରହସ୍ୟାବୃତ ଭାବରେ ସଂପନ୍ନ କରାହୁଏ । ଏହି 'ବ୍ରହ୍ମ' ବାରଯବ ପରିମିତ ରନ୍ଧ୍ରରେ ଅବସ୍ଥାପିତ ହୋଇଥାନ୍ତି । ଅତି ସାବଧାନତା ସହିତ ପୁରାତନ ମୂର୍ତ୍ତିରୁ ନୂତନ ମୂର୍ତ୍ତିର ଉଦରାଭ୍ୟନ୍ତରକୁ ଏହି ବ୍ରହ୍ମପଦାର୍ଥ ଅପସାରିତ ହୁଏ ଓ ବ୍ରହ୍ମସ୍ଥଳୀରେ ସ୍ଥାପନ କରାହୁଏ । ଏହି କାର୍ଯ୍ୟରେ ଗୃହିଜଣ ଦଇତାପତି ନିଯୁକ୍ତ ରୁହନ୍ତି । କଥିତ ଅଛି, ନବକଳେବରଙ୍କ ସମ୍ମୁଖୀକରଣ ଓ ବ୍ରହ୍ମସ୍ଥାପନ ସମୟରେ ନାନା ପ୍ରକାର ଦୈବୀ ଦୁର୍ବିପାକ ଦେଖାଦିଏ । ଜନସାଧାରଣ ବିଭିନ୍ନ ଆଶଙ୍କାରେ ଆତଙ୍କିତ ହୁଅନ୍ତି ।

ବ୍ରହ୍ମ ନବ କଳେବରରେ ଅବସ୍ଥାପିତ ହେଲାପରେ ଶୋଡ଼ଷୋପଚାରରେ ପୂଜା କରାଯାଏ । ଦଇତାମାନେ ପୂର୍ବ ବିଗ୍ରହଗୁଡ଼ିକୁ ଶଗଡ଼ ଗାଡ଼ିରେ ଦକ୍ଷିଣ ଦ୍ୱାର ଦେଇ କୋଇଲି ବୈକୁଣ୍ଠକୁ ନେଇ ଯାଆନ୍ତି । ପୂର୍ବ ବିଗ୍ରହମାନଙ୍କ ଦ୍ୱାରା ବ୍ୟବହୃତ ହେଉଥିବା ଦ୍ରବ୍ୟ ସମୂହ, ପାର୍ଶ୍ୱ ଦେବତାଗଣ, ରଥ, ସାରଥି ଓ ଅଶ୍ୱମାନଙ୍କୁ ,ପୁରାତନ କଳେବର ସହିତ କୋଇଲି ବୈକୁଣ୍ଠସ୍ଥ ଏକ ସ୍ଥାନରେ ଅବସ୍ଥାପିତ କରାଯାଏ ଓ ପୂର୍ବରୁ ପ୍ରସ୍ତୁତ ହୋଇ ରହିଥିବା ସମାଧିରେ ଏହି ପୁରାତନ ଶ୍ରୀମୂର୍ତ୍ତିଙ୍କୁ ବିସର୍ଜନ କରାଯାଏ । ଲୋକାଚାର ମତରେ ଦଇତାପତିମାନେ ଅନ୍ତ୍ୟେଷ୍ଟିକ୍ରିୟା ସମ୍ପନ୍ନ କରନ୍ତି । ସେମାନେ କୃଷ୍ଣ ଚତୁର୍ଦ୍ଦଶୀଠାରୁ ଦଶଦିନ ପର୍ଯ୍ୟନ୍ତ ଅଶୌଚ ପାଳନ ପୂର୍ବକ ହବିଷ୍ୟାନ୍ନ ଗ୍ରହଣ କରନ୍ତି ଏବଂ

ଏକାଦଶୀଦ୍ଦ ଦ୍ଦନ ଶୁକ୍ଳ ନବମୀ ତିଥିରେ ମୁକ୍ତିମଣ୍ଡପରେ ବସି ତୈଳ ମର୍ଦ୍ଦନ ପୂର୍ବକ ମାର୍କଣ୍ଡେୟ ସରୋବରରେ କ୍ଷୌରକର୍ମ ଓ ସ୍ନାନାଦ୍ଦି ସମାପନ କରନ୍ତି । ତତ୍ପରେ ବାଇଶି ପାହାଚରେ ଗୋଡ଼ ଧୋଇ ମହାରାଜାଙ୍କ ପ୍ରଦତ୍ତ ନବବସ୍ତ୍ର ପରିଧାନ କରି ମନ୍ଦିରକୁ ଆସନ୍ତି ଓ ଶାନ୍ତି ଉଦକ ପାନ କରନ୍ତି । ଦ୍ୱାଦଶୀଦ୍ଦ ଶୁକ୍ଳଦଶମୀ ତିଥିରେ ଦଇତାପତିମାନେ ଷୋଳ ଶାସନର ବ୍ରାହ୍ମଣମାନଙ୍କୁ ସାଧୁ, ସନ୍ଥ ଓ ଛତିଶାନିଯୋଗମାନଙ୍କୁ ମହାପ୍ରସାଦ ବିତରଣ କରନ୍ତି । ଏ ସମୟରେ ପ୍ରାୟ ଦଶ ସହସ୍ର ବ୍ୟକ୍ତିଙ୍କର ଏକକାଳୀନ ମହାପ୍ରସାଦ ସେବନ ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷୀ ହୋଇଥାଏ । ଆଷାଢ଼ କୃଷ୍ଣ ଚତୁର୍ଦ୍ଦଶୀ ଠାରୁ ଶୁକ୍ଳ ନବମୀ ତିଥି ପର୍ଯ୍ୟନ୍ତ ନବ କଳେବର ମାନଙ୍କର ଶ୍ରୀ ଅଙ୍ଗରେ ଶ୍ୱେତ ଅଙ୍ଗରାଗ ବୋଳାଯାଉ ଥାଏ । ଏହାକୁ ଖଡ଼ିଲାଗି କୁହନ୍ତି । ତତ୍ପରେ ପୂର୍ଣ୍ଣ ଶ୍ରୀଅଙ୍ଗରାଗ ହୋଇ ଅମାବାସ୍ୟା ଦ୍ଦନ ଅନବସର ପିଣ୍ଡିରେ ଶ୍ରୀ ମୂର୍ତ୍ତିମାନେ ଜନସାଧାରଣଙ୍କୁ ନିଜ ଦର୍ଶନ ଦ୍ଦଅନ୍ତି । ଏହା ଶ୍ରୀ ଜଗନ୍ନାଥ ଦେବଙ୍କର ନବଯୌବନ ଦର୍ଶନ ବା ନେତ୍ରୋତ୍ସବ ନାମରେ ସୁବିଦ୍ଦତ ।

ପ୍ରବାଦ ଅଛି ଯେଉଁ ଦଇତାମାନେ ବ୍ରହ୍ମ ସ୍ଥାପନା କରାଇ ଥାନ୍ତି ସେମାନଙ୍କର ମୃତ୍ୟୁ ହୋଇଥାଏ । କିନ୍ତୁ ଏହି ଧାରଣା ପକ୍ଷରେ କୌଣସି ଯୁକ୍ତି ସମ୍ମତ ପ୍ରମାଣ ନାହିଁ । ନବ କଳେବର ଅନୁଷ୍ଠିତ ହେଲାପରେ ପୂର୍ବରୁ ବ୍ୟବହୃତ ହେଉଥିବା ଶ୍ରୀମୂର୍ତ୍ତି ମାନଙ୍କର ସମସ୍ତ ଜିନିଷ ଦଇତାପତିମାନଙ୍କର ପ୍ରାପ୍ୟ । ବାହାରେ ପୂର୍ବ ବ୍ୟବହୃତ ଯାହାସବୁ ଥାଏ ସେଗୁଡ଼ିକୁ ସେମାନେ ନିଅନ୍ତି ।

ଏହି ସମୟରେ ମନ୍ଦିର କରଣମାନେ ବିଶେଷ ସାବ-ଧାନତା ଅବଲମ୍ବନ କରିଥାନ୍ତି । ଭଣ୍ଡାରରେ ଥିବା ସମସ୍ତ

ମୂଲ୍ୟବାନ ସୁନାରୁପାକୁ ମଧ୍ୟ ଦଇତାପତିମାନେ ନେବାକୁ ଦାବି କରନ୍ତି । ଏଥିପାଇଁ ସେମାନଙ୍କୁ କିଛି ଅର୍ଥ ବା ଉପଢ଼ୌକନ ଦିଆଯାଏ ଏବଂ ସେମାନେ ମହାପ୍ରଭୁମାନଙ୍କର ନିତ୍ୟ ବ୍ୟବହୃତ ଜିନିଷମାନ ନିଅନ୍ତି । ଦଇତାପତିମାନେ ଶୁଦ୍ଧାହରେ ଗଜପତିଙ୍କ ଠାରୁ ଲୁଗା ଯୋଡ଼ ଓ ପୁରସ୍କାର ଦକ୍ଷିଣା ପାଆନ୍ତି । ବସ୍ତୁତଃ ନବ କଳେବରର ଅନୁଷ୍ଠାନରେ ସେମାନେ ବିଶେଷ ଭାବରେ ଅଂଶୀଦାର । ଦଇତାପତିମାନେ ସ୍ୱୟଂ ମହାପ୍ରଭୁଙ୍କର ବଂଶଧର ରୂପେ କଳ୍ପିତ ହୋଇ ଅନ୍ତ୍ୟେଷ୍ଟିକ୍ରିୟାରେ ଯୋଗ ଦିଅନ୍ତି ଓ ଅଶୌଚ ପାଳନ ପୂର୍ବକ ଶୁଦ୍ଧିକ୍ରିୟା ସମ୍ପନ୍ନ କରନ୍ତି ।

ଚଳିତ ବର୍ଷ ଅନୁଷ୍ଠିତ ହେଉଥିବା ନବ କଳେବର ଉତ୍ସବରେ ଶ୍ରୀ ଜଗନ୍ନାଥଙ୍କ ଦାରୁ ତାପଙ୍ଗ ଅଞ୍ଚଳର ଚମ୍ପାଝର



( ଚମ୍ପାଝରସ୍ଥ ଦାରୁବୃକ୍ଷ ମୂଳରେ ଦଇତାପତି )

ଗ୍ରାମରୁ ମିଳିଅଛି । ଉକ୍ତ ସ୍ଥାନଟି ଶ୍ରୀକ୍ଷେତ୍ରରୁ ପ୍ରାୟ ୫୦ ମାଇଲ ଦୂର ।

ଶ୍ରୀ ବଳଭଦ୍ରଙ୍କ ଦାରୁ ପୁରୀରୁ ୩୨ ମାଇଲ ଦୂରବର୍ତ୍ତୀ ବନମାଳୀ ପୁରରୁ ମିଳିଅଛି । ସୁଭଦ୍ରାଙ୍କ ଦାରୁ କଟକ ଜିଲ୍ଲାର କାନପୁର ଗ୍ରାମରୁ ମିଳିଅଛି । ଏହାର ଦୂରତା ଶ୍ରୀକ୍ଷେତ୍ରରୁ ପ୍ରାୟ

୪୪ ମାଇଲ । ଶ୍ରୀ ସୁଦର୍ଶନଙ୍କ ଦାରୁ ପୁରୀ ଜିଲ୍ଲାର ନୟାହାଟରୁ ମିଳିଅଛି । ଉକ୍ତ ସ୍ଥାନଟି ଶ୍ରୀ ମନ୍ଦିରର ପାଖରୁ ପ୍ରାୟ ୪୨ ମାଇଲ ଦୂର ।

ଅନୁଷ୍ଠିତ ନବ କଳେବର ପ୍ରଥା ମୂଳରେ ଏକ ଦାର୍ଶନିକ ଦୃଷ୍ଟିଭଙ୍ଗୀ ରହିଛି । ଦେବତାମାନଙ୍କୁ ମନୁଷ୍ୟ ନିଜ ଦୃଷ୍ଟିରେ ବିଚାର କରିଆସିଛି । ଆତ୍ମା ପୁରାତନ ଜୀର୍ଣ୍ଣ ଦେହକୁ ପରିତ୍ୟାଗ କରି ନୂତନ ଶରୀରରେ ଆଶ୍ରୟ ନେଉଥିବା ଧାରଣାଟି ବହୁ ପୂର୍ବରୁ ଭାରତୀୟ ସଂସ୍କୃତିରେ ପ୍ରତିଷ୍ଠିତ । ଆତ୍ମାର ବିନାଶ ନାହିଁ । ତାହା ଶାଶ୍ୱତ, ଅକ୍ଷୟ ଓ ଅବ୍ୟୟ । କିନ୍ତୁ ଶରୀର ବା କଳେବରର ବିନାଶ ଅଛି । ଯଥା:—'ଦେହେ ତଥା ଦେବେ' । ଏହି ଦୃଷ୍ଟିରୁ ନବ କଳେବରର ଦାର୍ଶନିକ ତତ୍ତ୍ୱ ବିଚାର୍ଯ୍ୟ । ପୁରାତନ କଳେବରରୁ ନବ କଳେବରର ଅଭ୍ୟନ୍ତରରେ ଯେଉଁ ବ୍ରହ୍ମ ସ୍ଥାପନା କରାହୁଏ, ତାହା ଆତ୍ମା ସଦୃଶ ଅବ୍ୟୟ ଓ ଅବ୍ୟକ୍ତ ରୂପେ ପରିକଳ୍ପିତ । ମୂର୍ତ୍ତିର ପରିବର୍ତ୍ତନ ହେଲେ ମଧ୍ୟ ଏହି 'ବ୍ରହ୍ମ ପଦାର୍ଥର' କୌଣସି ପରିବର୍ତ୍ତନ ହୁଏ ନାହିଁ । ଦେହ ଓ ଆତ୍ମା ସମ୍ବନ୍ଧରେ ଅବ୍ୟକ୍ତ ଔପନିଷଦିକ ଦର୍ଶନକୁ ନବ କଳେବର ଅନୁଷ୍ଠାନରେ ପ୍ରତୀକଭାବେ ସ୍ୱୀକୃତି ଦିଆ ହୋଇଛି । ଯଥାର୍ଥରେ ବିଷ୍ଣୁ ସଂହିତାରେ ଉକ୍ତ ଅଛି,—

"ଦେହଂ ଦେହୀ ଯଥା ଜୀର୍ଣ୍ଣଂ ତ୍ୟକ୍ତ୍ୱା ଦେହାନ୍ତରଂ ବ୍ରଜେତ୍
ତ୍ୟକ୍ତ୍ୱା ଜୀର୍ଣ୍ଣଂ ତଥା ବିମ୍ବଂ ଦେବୋପିଽ ଭଜତେ ନବମ୍ ।"

ଏହି ମୂର୍ତ୍ତି ନିର୍ମାଣ ଓ ଦାରୁ ସ୍ୱରୂପ ବର୍ଣ୍ଣନ ମୂଳରେ ଶାସ୍ତ୍ରୀୟ ସମର୍ଥନ ରହିଅଛି । ବୈଖାନସ ଆଗମ, ଭବିଷ୍ୟ-ପୁରାଣ, ବିଷ୍ଣୁଧର୍ମୋତ୍ତର ପୁରାଣ ଓ ବୃହତ୍‌ସଂହିତାଦି ଗ୍ରନ୍ଥରେ

ଦାରୁମୂର୍ତ୍ତିର ପ୍ରଶସ୍ତି ବର୍ଣ୍ଣିତ । ଏପରିକି 'ବନ ପ୍ରବେଶ' ପରି ମିକ ଅଧ୍ୟାୟ ମଧ୍ୟ ଗ୍ରନ୍ଥ ମାନଙ୍କରେ ସନ୍ନିବେଶିତ ହୋଇଅଛି ଓ ନବ କଳେବରରେ ନିମ୍ବ ଦାରୁର ସନ୍ଧାନ ଏବଂ ସେଥିରେ ବିଷ୍ଣୁ ବିଗ୍ରହ ସଂପାଦନ କ୍ରିୟା ମଧ୍ୟ ଶାସ୍ତ୍ର ସମର୍ଥିତ । ନିମ୍ବ ବୃକ୍ଷ ସର୍ବ ବର୍ଣ୍ଣର ଉପାସ୍ୟ ଏବଂ ପୁଂବୃକ୍ଷ । ତେଣୁ ଜଗତର ନାଥ ଜଗନ୍ନାଥଙ୍କ ବିଗ୍ରହ ପାଇଁ କେବଳ ନିମ୍ବ ବୃକ୍ଷ ହିଁ ଉପଯୁକ୍ତ ଉପାଦାନ —"ନିମ୍ବଃ ଶ୍ରୀପର୍ଣ୍ଣି ବୃକ୍ଷଶ୍ଚ ପନସଃ

ସରଳୋର୍ଜ୍ଜୁନଃ ରକ୍ତଚନ୍ଦନ

ପର୍ଯ୍ୟାନ୍ତା ଶ୍ରେଷ୍ଠାଃସ୍ୟୁଃ ପ୍ରତିମାଦ୍ରୁମା ।"

ପୁନଶ୍ଚ —

"ନିମ୍ବାଦ୍ୟା ସର୍ବବର୍ଣ୍ଣାନାଂ ବୃକ୍ଷ ସାଧାରଣାଃ ସ୍ମୃତା ।"

ନିମ୍ବଦାରୁ ପୁରାତନ ହେଲେ ମଳୟ ସ୍ପର୍ଶରେ ସେ ଚନ୍ଦନ ବୃକ୍ଷରେ ପରିଣତ ହୁଏ । ତେଣୁ ତାହା ବିଷ୍ଣୁ ବିଗ୍ରହ ପାଇଁ ଉପଯୁକ୍ତ ।

ଧାତୁ, ପାଷାଣ ଅଥବା ମଣିମୟ ବିଗ୍ରହ ଉପାସନା କରିବା ଆପେକ୍ଷା ଦାରୁ ବିଗ୍ରହ ଉପାସନାରେ ବିଶେଷ ଫଳପ୍ରାପ୍ତି ହୁଏ । ତେଣୁ ବୃହତ୍‌ସଂହିତା, କାଶ୍ୟପଶିଳ୍ପ ବୈଖାନସ ଆଗମ ପ୍ରଭୃତିରେ ଏହି ଦାରୁ ଉପାସନାର ପ୍ରାଧାନ୍ୟ ଓ ଶ୍ରେଷ୍ଠତ୍ୱ ସ୍ୱୀକୃତ ହୋଇ ଅଛି ।

ଉଦାହରଣ ସ୍ୱରୂପ **ବୃହତ୍ ସଂହିତାରେ** ବରାହ ମିହିର କହିଛନ୍ତି—

ଆୟୁଃ ଶ୍ରୀ ବଳଜୟଦା ଦାରୁମୟୀ ମୃନ୍ମୟୀ ତଥା ପ୍ରତିମା
ଲୋକହିତାୟ ମଣିମୟୀ ସୌବର୍ଣ୍ଣୀ ପୁଷ୍ଟିଦା ଭବତି
ରଜତମୟୀ କୀର୍ତ୍ତିକରୀ ପ୍ରଜାବିବୃଦ୍ଧିଂ କରୋତି ତାମ୍ରମୟୀ
ଭୂଲାଭଂତୁ ମହାନ୍ତଂ ଶୈଳୀ ପ୍ରତିମା ଅବା ଲିଙ୍ଗମ୍ ।

ଅଥବା **କାଶ୍ୟପ ଶିଳ୍ପ**ରେ କୁହାଯାଇଛି ।

"ଯାଚିଂ। ମୃଦାରୁ ସଂଭୂତା ସାୟୁଃ ଶ୍ରୀ ବଳଦାମତା"

ବୈଖାନସ ଆଗମରେ ସେହିପରି ଦାରୁମୂର୍ତ୍ତିର ଶ୍ରେଷ୍ଠତ୍ୱ ସ୍ୱୀକାର କରାଯାଇଛି ।

"ଅଥ ଧ୍ରୁବବେରମ୍ ତାମ୍ରଜଂ ଶୈଳଂଜବା ବଧିପୁତେ
ଦାରବଂ ବା ମୃନ୍ମୟଂ ଶ୍ରେଷ୍ଠମ୍ ।"

ବୃହତ ସଂହିତାକାର ଯଥାର୍ଥରେ କହିଛନ୍ତି ଦାରୁମୂର୍ତ୍ତି ପ୍ରତିଷ୍ଠା କଲେ ଚତୁର୍ବେଧି ଫଳ ମିଳେ । ଆୟୁ, ଶ୍ରୀ, ବଳ ଓ ଜୟ । କିନ୍ତୁ ଅନ୍ୟାନ୍ୟ ମୂର୍ତ୍ତି ଉପାସନା କଲେ ଏତେ ଫଳ ମିଳେନାହିଁ ।

ସାଧାରଣତଃ ଦ୍ୱାଦଶବର୍ଷରେ ଦାରୁପ୍ରତିମା ବଦଳେ । କିନ୍ତୁ ମଧ୍ୟ ଦ୍ୱାଦଶ ବର୍ଷରେ ବଦଳେ । ଶାସ୍ତ୍ରୀୟ ପରମ୍ପରାନୁଯାୟୀ—

| | | |
|---|---|---|
| ମଣିବିଗ୍ରହମାନଙ୍କର ପରମାୟୁ | ୧୦ | ସହସ୍ର ପରିମିତ ବର୍ଷ । |
| ଧାତୁ ବିଗ୍ରହ | ୧ | ସହସ୍ର ବର୍ଷ |
| ଦାରୁ ବିଗ୍ରହ | ୧୨ | ବର୍ଷ |
| ଚିତ୍ର ପ୍ରତିମା | ୧ | ବର୍ଷ |
| ମୃଣ୍ମୟ ପ୍ରତିମା | ୧ | ମାସ |

ପୁନଶ୍ଚ ଭବିଷ୍ୟପୁରାଣ ଓ ବୈଖାନସ ଆଗମରେ ବନପ୍ରବେଶ ପୂର୍ବକ କପରି ଏବଂ କେଉଁ ଦାରୁ କେଉଁ ସ୍ଥାନରୁ ନିର୍ବାଚିତ ହେବ ସେଥିପାଇଁ ଏକ ସ୍ୱତନ୍ତ୍ର ଅଧ୍ୟାୟମାନ ସୃଷ୍ଟି ହୋଇଅଛି । ଏହିପରି

ଶାସ୍ତ୍ରୀୟ ରୀତି ଅନୁସାରେ ଜଗନ୍ନାଥଙ୍କ ଶ୍ରୀ ବିଗ୍ରହ ପାଇଁ ଦାରୁ ଅନ୍ୱେଷଣ ଏବଂ ଆୟୋଜନ କାର୍ଯ୍ୟ ସୁସଂପନ୍ନ ହେଉଅଛି, ଏଥିରେ ମଧ୍ୟ ଆର୍ଯ୍ୟ ଓ ଆର୍ଯ୍ୟେତର ସଂସ୍କୃତିର ସମନ୍ୱୟର ଆଦର୍ଶ ପରିଦୃଷ୍ଟ । ଦଇତାମାନେ ଦାରୁ ସ୍ଥିର କରିବେ, ଆଣିବେ, କର୍ତ୍ତନାଦି କରିବେ କିଂତୁ ବନଯାଗ ଓ ହୋମାଦି କେବଳ ବ୍ରାହ୍ମଣମାନେହିଁ କରି ପାରିବେ । ଠିକ ଏହିପରି ଭାବରେ ଏ ବର୍ଷ ଜଗନ୍ନାଥ ଓ ଅନ୍ୟ ଦେବତାଙ୍କ ଦାରୁ ଅନ୍ୱେଷଣ, କର୍ତ୍ତନ ଓ ଆନୟନରେ ଶାସ୍ତ୍ରୀୟ ବିଧି ଆଚରିତ ହୋଇ ଅଛି । ଜଗନ୍ନାଥଙ୍କ ଦାରୁ ଯେଉଁ ଠାରୁ ଆସିଛି ସେଠାରେ ଏକ ଯଜ୍ଞଶାଳା ନିର୍ମିତ ହୋଇଥିଲା । ତିନଦିନ ବ୍ୟାପୀ ଯଜ୍ଞ କାର୍ଯ୍ୟ ସମାପନ ପରେ ଯଜ୍ଞୀୟ ଅରଣି ଛେଦନ କ୍ରିୟାନୁସାରେ ସେଠାରେ ଦାରୁ ଛେଦନ କ୍ରିୟା ଆରମ୍ଭ କରାଯାଇଥିଲା । ବିପୁଳ ଲୋକ କୋଳାହଳ ମଧ୍ୟରେ ସେହି ଜଗନ୍ନାଥଙ୍କ ଦାରୁ ମଧ୍ୟରେ ଥିବା ଶଙ୍ଖ, ଚକ୍ର, ଗଦା, ପଦ୍ମାଦି ଚିହ୍ନ ଦେଖି ଶତଶତ ଭକ୍ତପ୍ରାଣ ଜନତା ଅଭିଭୂତ ହୋଇ ଯାଇଥିଲେ ।

## ପୁରୁଷୋତ୍ତମ ଧାମରେ ରଥଯାତ୍ରା

ପ୍ରତିବର୍ଷ ଏହି ଯାତ୍ରା ଅନୁଷ୍ଠିତ ହୁଏ । ଏହାକୁ ଶ୍ରୀଗୁଣ୍ଡିଚା, ପତିତପାବନ ଯାତ୍ରା, ଘୋଷ ଯାତ୍ରା ପ୍ରଭୃତି ନାମରେ ନାମିତ କରାଯାଇଛି । ପୂର୍ବୋକ୍ତ ନବ କଳେବର ଭଳି ଏହି ରଥଯାତ୍ରାର ସ୍ୱରୂପ ମଧ୍ୟ ଅସାଧାରଣ । ଏ ଯାତ୍ରାରେ ଚତୁର୍ଦ୍ଧା ମୂର୍ତ୍ତିଙ୍କର ସମାନ ବିଶେଷତ୍ୱ ରହିଅଛି ।

ଅକ୍ଷୟ ତୃତୀୟାରେ ରଥ ନିର୍ମାଣ କାର୍ଯ୍ୟ ଆରମ୍ଭ ହୁଏ, କାରଣ ସେହି ଅକ୍ଷୟତୃତୀୟାରେ ସତ୍ୟଯୁଗ ଆରମ୍ଭ ହୋଇଥିଲା; ତେଣୁ ଏ ଦିନଟି ଅତି ପବିତ୍ର ଓ ଗୁରୁତ୍ୱପୂର୍ଣ୍ଣ ।

ରଥ ତିଆରି ସ୍ଥାନରୁ ପ୍ରଥମେ ଜଗନ୍ନାଥଙ୍କ ରଥ ସିଂହଦ୍ୱାର ସମ୍ମୁଖ ସ୍ଥାନକୁ ଆସେ । ରଥର ଦଉଡ଼ି ଟାଣିବା ଓ ରଥଚଳନ ପ୍ରଥମେ ବଳଦେବଙ୍କର । ବାହୁଡ଼ା ସମୟରେ ରଥକୁ ଦକ୍ଷିଣାୟନ କରାହୁଏ । ସେଥିରେ ପ୍ରଥମେ ସୁଭଦ୍ରାଙ୍କର ରଥର ଚଳନ ସମ୍ପାଦିତ ହୁଏ । ଏହାହିଁ ଆଶ୍ଚର୍ଯ୍ୟ ।

ସାଧାରଣତଃ ତିନୋଟି ରଥ ନିର୍ମିତ ହୁଏ । ଜଗନ୍ନାଥଙ୍କ ରଥର ନାମ 'ନନ୍ଦିଘୋଷ' ବଳଦେବଙ୍କ ରଥର ନାମ 'ତାଳଧ୍ୱଜ' ଓ ସୁଭଦ୍ରାଙ୍କର ରଥର ନାମ 'ଦେବୀଦଳନ' ବା 'ଦେବୀ ରଥ' । ଉକ୍ତ ତିନୋଟି ରଥ ଏକଧାଡ଼ିରେ ସିଂହଦ୍ୱାର ସନ୍ନିକଟ ଉନ୍ମୁକ୍ତ ସ୍ଥାନରେ ଠିଆହୋଇଥାନ୍ତି । ପ୍ରଥମରେ ବଳଭଦ୍ରଙ୍କ ରଥ, ତାପରେ ସୁଭଦ୍ରା ଓ ସର୍ବଶେଷରେ ଜଗନ୍ନାଥଙ୍କ ରଥଟଣା ହୁଏ । ଟଣା ହେଲାବେଳେ ଉଭୟ ପାର୍ଶ୍ୱରେ ନାନାବିଧ ପଂକ୍ତି ଭୋଗ ଅନୁଷ୍ଠିତ ହୁଏ । ବିବିଧ ବନ୍ଦାପନା ପୂର୍ବକ ନାନାବାଦ୍ୟସହ ବିଭିନ୍ନ ସ୍ଥାନରେ ପଂକ୍ତି-ଭୋଗ ଖାଇ ଲୋକସାଗର କୋଳାହଳ ମଧ୍ୟ ଦେଇ ରଥସ୍ଥ ଦେବତା ଯାତ୍ରା କରନ୍ତି । ଏହି ଯାତ୍ରାଦିନ ରଥରେ ରହି ତତ୍ପର ଦିନ ମହାସମାରୋହରେ ଯଜ୍ଞବେଦୀ (ଗୁଣ୍ଡିଚା ଘର)କୁ ଯାତ୍ରା କରନ୍ତି ଏବଂ ସେହି ଯଜ୍ଞବେଦୀ ବା ଗୁଣ୍ଡିଚା ମଣ୍ଡପରେ ଏକ ସପ୍ତାହ ବ୍ୟାପୀ ଅବସ୍ଥାନକରି ବାହୁଡ଼ା ଦଶମୀଦିନ ସୂର୍ଯ୍ୟୋଦୟ ପୂର୍ବରୁ ଖେଚରାନ୍ନ ଭୋଗ, ଧୂପାଦି ଯାତ୍ରା ବେଶରେ ଥାଇ କ୍ରମରେ ଦକ୍ଷିଣ ମୁଖହୋଇ ରଥାରୂଢ଼ ହୁଅନ୍ତି । ଯେପରି ନୀଳାଦ୍ରିରୁ ଯାତ୍ରାକଲାବେଳେ

ଅନ୍ନଭୋଗ ହୋଇଥାଏ, ମୋହମତ ବାହୁଲ୍ଯାଦନ ମଧ୍ଯ ଅନ୍ନଭୋଗ ହୁଏ । ଏହି ରଥଯାତ୍ରା କାଳରେ ଜାତିଧର୍ମ-ନିର୍ବିଶେଷରେ ପ୍ରତ୍ୟେକ ବ୍ୟକ୍ତି ତଥା ଭକ୍ତ ଭଗବାନଙ୍କର ଦର୍ଶନ ସ୍ପର୍ଶନ କରିବାକୁ ସୁଯୋଗ ପାଇଥାନ୍ତି । ଏହାହିଁ ଉକ୍ତପୀଠରେ ରଥଯାତ୍ରାର ସର୍ବପ୍ରଧାନ ବୈଶିଷ୍ଟ୍ୟ । ଭାରତର ଅନ୍ୟକୌଣସି ଦେବାୟତନରେ ଏପରି ବିଧି ନାହିଁ କହିଲେ ଚଳେ ।

## ରଥର ବିଭିନ୍ନ ଉପକରଣ

ଜଗନ୍ନାଥ ଦେବଙ୍କ ରଥ ଯାହାକି ନନ୍ଦିଘୋଷ ନାମରେ ନାମିତ ତାହାର ରଥାଙ୍ଗ ୧୬ଟି । ଉକ୍ତ ଷୋଡ଼ଶ ଚକ ଷୋଡ଼ଶ କଳାତ୍ମକ । ସୁଭଦ୍ରାଙ୍କ ରଥର ନାମ ଦେବୀରଥ । ଏହାଙ୍କ ରଥର ଚକ ୧୨ଟି । ଏହି ଦ୍ୱାଦଶ ଚକ ଦ୍ୱାଦଶ ମାସାତ୍ମକ ସମ୍ବତ୍ସର ରୂପୀ କାଳଚକ୍ର ଅଟେ । କାରଣ ସେ କାଳକୁ ପ୍ରଥମେ ସୃଷ୍ଟି କରିଥିଲେ । ସେହି ସକାଶେ ପ୍ରଥମେ ସୁଦର୍ଶନହିଁ ରଥକୁ ଆସେ, ତା ପରେ ସୁଭଦ୍ରା, ତା ପରେ ବଳଭଦ୍ର ଓ ଶେଷରେ ଜଗନ୍ନାଥ ମନ୍ଦିରଭିତରୁ ରଥକୁ ପହଣ୍ଡି ବିଜେରେ ଆସନ୍ତି । ବଳଭଦ୍ରଙ୍କ ରଥ ଚତୁର୍ଦ୍ଦଶ ଚକ୍ର ଘଟିତ । ଏହା ଚତୁର୍ଦ୍ଦଶ ମନ୍ୱନ୍ତର ରୂପ ବ୍ରହ୍ମାଙ୍କର ପରମାୟୁ କାଳର ବ୍ୟଞ୍ଜକ । ଏହି ବଳଭଦ୍ର ବିରାଟ ରୂପ ଅର୍ଥାତ୍ ସ୍ଥୂଳ ଜଗତର ଅଧୀଶ୍ୱର ଅଟନ୍ତି । ତେଣୁ ସେ ବଡ଼ ଠାକୁର । ପୁନଶ୍ଚ ସେହି ୧୪ଟି ଚକ ଚତୁର୍ଦ୍ଦଶ ଭୁବନର ପ୍ରତୀକ ଅଟେ ।

# ଶ୍ରୀ ଜଗନ୍ନାଥ ଦେବଙ୍କ ରଥ




[ ବିବରଣୀ ପର ପୃଷ୍ଠାରେ ଦିଆଯାଇଛି ]

ବଡ଼ଦାଣ୍ଡ ଅଂଶର ନାମ— ୧-ଚକ, ୨-ଦାଣ୍ଡିଆ, ୩-ଅର, ୪-ବାଙ୍କି, ୫-ହଂସପଟା, ୬-କଣି, ୭-ଶଙ୍ଖଦ୍ୱାର, ୮-ଜାଲି, ୯-ଗାଣ୍ଠପଟା ୧୦-ସିଂହାସନ, ୧୧-କଳକମୁଣ୍ଡାଇ, ୧୨-ଭୂମି, ୧୩-ଷୋଳନାହାକା, ୧୪-ମଗର ଦଣ୍ଡା, ୧୫-ବଯନ୍ତ, ୧୬-ଦୁଆର ଘୋଡ଼ା, ୧୭-ସାରଥୀ ପୀଢ଼, ୧୮-କୁମ୍ଭପଟି, ୧୯-ଗହ୍ମପଟି, ୨୦-ଆଠନାହାକା ୨୧-ବାଙ୍କି, ୨୨-ପୀଢ଼, ୨୩-ଗୃଷୀପଟା, ୨୪-ଦଣ୍ଡା, ୨୫-ପାର୍ଶ୍ୱଘଡ଼, ୨୬-ଖପୁରି, ୨୭-ପାଦ, ୨୮-ଓଲଟଶୁଆ, ୨୯-ଦଧିନଉତି, ୩୦-କଳସ, ୩୧-କଣ୍ଟି, ୩୨-ଦଣ୍ଡ, ୩୩-ଚକ୍ର, ୩୪-କପିକେତନ ।

ପୂର୍ବୋକ୍ତ ରଥଯାତ୍ରାର ଉତ୍ପତ୍ତି ଓ ଇତିହାସ ଆଲୋଚନା କଲେ ମନେହୁଏ ଏହା ଏକ ଅତି ପ୍ରାଚୀନ ଯାତ୍ରା । ବହୁ ସମାଲୋଚକ ଏହାକୁ ବୌଦ୍ଧୀୟ ରଥଯାତ୍ରା ସଙ୍ଗେ ତୁଳନା କରି ତ୍ରିମୂର୍ତ୍ତି ସହିତ ବୁଦ୍ଧ, ଧର୍ମ ଓ ସଂଘର ସାମ୍ୟ ପ୍ରଦର୍ଶନ କରି ଥାଆନ୍ତି । କିନ୍ତୁ ତାହା ଠିକ୍ ନୁହେଁ । କେବଳ ବୌଦ୍ଧ ଧର୍ମରେ ବା ବୌଦ୍ଧୀୟ ଉତ୍ସବରେ ଯେ କେବଳ ରଥ ପ୍ରଚଳନର ବ୍ୟବସ୍ଥା ରହିଛି ତାହା ନୁହେଁ ବୈଦିକ ଯୁଗରୁ ଏ ରଥର ଉପଯୋଗିତା ସ୍ୱୀକୃତ ହୋଇଅଛି । ଅଥର୍ବ ବେଦରେ ସମସ୍ତ ଦେବତାଙ୍କୁ ଗୋଟିଏ ରଥରେ ଆସିବାକୁ ବା ଗୋଟିଏ ଗୋଟିଏ ରଥରେ ଆସିବାକୁ ଅଗ୍ନି ନିର୍ଦ୍ଦେଶ ଦେଇଛନ୍ତି । ଅଥର୍ବ ବେଦ ୨୦ । ୧୪ । ୪ ।

ପୂର୍ବରୁ କୁହାଯାଇଛି ଯେ ଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରା ମଧ୍ୟରୁ ଏ ଯାତ୍ରା ଅତି ପ୍ରସିଦ୍ଧ । ଏହା ଭଗବାନଙ୍କର ସ୍ୱୟଂ ଲୀଳା ବା ସ୍ୱକୀୟ ଯାତ୍ରା । ଅନ୍ୟାନ୍ୟ ଯାତ୍ରାରେ ଦେବତାଙ୍କ ପ୍ରତିନିଧି ବା ଚଳନ୍ତି ପ୍ରତିମାମାନେ ଉତ୍ସବରେ ଯୋଗ ଦିଅନ୍ତି । ମାତ୍ର ମଞ୍ଜସ୍ନାନ ଓ ରଥଯାତ୍ରାରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ସମସ୍ତେ ମୀଳାଦ୍ରି କନ୍ଦରରୁ ପହଣ୍ଡିବିଜେ ପୂର୍ବକ ବାହାରକୁ ଆସନ୍ତି ଏବଂ ସ୍ୱୟଂ ଲୀଳାସଂପାଦନ କରନ୍ତି ।

| | ଜଗନ୍ନାଥ | ସୁଭଦ୍ରା | ବଳଭଦ୍ର |
|---|---|---|---|
| ରଥ— | ନନ୍ଦିଘୋଷ | ଦର୍ପଦଳନ (ଦେବୀରଥ) | ତାଳଧ୍ୱଜ |
| ସାରଥୀ— | ମାତଳୀ | ଦେବଦତ୍ତ | ତାଳଧ୍ୱଜ |
| ଘୋଡ଼ା— | ଶଙ୍ଖିନୀ, ବଳାହକା, ମୋଚକା, ଜ୍ୱାଳନୀ | ପ୍ରଜ୍ଞା, ଅନୁଜ୍ଞା, ଘୋରା, ଆଘୋରା | ଋକ୍, ଯଜୁ, ସାମ, ଅଥର୍ବ |
| ଚକ— | ୧୬ | ୧୨ | ୧୪ |
| ଅର— | ୧୬ | ୧୨ | ୧୪ |
| ଋଷି— | ପରାଶର | ଯାଜ୍ଞବଲ୍କ୍ୟ | ଅଙ୍ଗିରା |
| ଦେବତା— | ନୃସିଂହ | ଜୟଦୁର୍ଗା | ଶେଷଶାୟୀ |

ଜଗନ୍ନାଥଙ୍କ ରଥ **ନନ୍ଦିଘୋଷ** ଚକଠାରୁ ୨୩ ହାତ ଉଚ୍ଚ ଏବଂ ରଥର ଦୀର୍ଘ ପ୍ରସ୍ଥ ସମାନ ।

ସୁଭଦ୍ରାଙ୍କ ରଥ **ଦେବୀରଥ** ଚକଠାରୁ ୨୧ ହାତ ଉଚ୍ଚ ଏବଂ ରଥର ଦୀର୍ଘ ପ୍ରସ୍ଥ ସମାନ ।

ବଳଭଦ୍ରଙ୍କ ରଥ **ତାଳଧ୍ୱଜ** ଚକଠାରୁ ୨୨ ହାତ ଉଚ୍ଚ ଏବଂ ରଥର ଦୀର୍ଘ ପ୍ରସ୍ଥ ସମାନ ।

[ ମନ୍ଦିର ଭଳି ରଥରେ ମଧ୍ୟ ଆବରଣ ଦେବତା ଅଛନ୍ତି । ]

ଏ ଯାତ୍ରା କିନ୍ତୁ ଆଷାଢ଼ ମାସରେ ଅନୁଷ୍ଠିତ ହୁଏ । ଏହାର କାରଣ ମଧ୍ୟ ବେଶ୍ ତତ୍ତ୍ୱପୂର୍ଣ୍ଣ । ଆଷାଢ଼ ଶୁକ୍ଳ ଦ୍ୱିତୀୟା ପୁଷ୍ୟା ନକ୍ଷତ୍ରରେ ଆରମ୍ଭ ହୁଏ ପୁଣି ବାହୁଡ଼ା ଦଶମୀରେ ଗୁଣ୍ଡିଚା ମଣ୍ଡପରୁ ରଥକୁ ଆସି ନୀଳାଦ୍ରିକୁ ଯାତ୍ରା କରନ୍ତି । ଏ ଯାତ୍ରା ନବଦିନ ବ୍ୟାପୀ ଅନୁଷ୍ଠିତ ହୁଏ । ଉତ୍ସବର ବିଧିବିଧାନର ସମସ୍ତ ନିରୂପଣ କରିବାକୁ ଯାଇ ବିଷ୍ଣୁ ସଂହିତାକାର ନବଦିନବ୍ୟାପୀ ଉତ୍ସବ ଅନୁଷ୍ଠିତ ହେବା ବିଧିକୁ ସମର୍ଥନ କରିଛନ୍ତି । "ନବାହଂ ବାପି ସପ୍ତାହଂ ପଞ୍ଚାହ ନେଷ୍ୟତେ ପରମ୍" । କିନ୍ତୁ ଏହି ନବଦିନ ବ୍ୟାପୀ ଯାତ୍ରାର ସ୍ଥାୟିତ୍ୱରେ ଆହୁରି ଏକ ଗମ୍ଭୀର ଏବଂ ତାତ୍ତ୍ୱିକ ଅର୍ଥ ନିହିତ ରହିଛି । ବିଶ୍ୱରୂପୀ ଭଗବାନଙ୍କର ପାଦରେ ଯେଉଁ ଅଷ୍ଟାଦଶ ଚିହ୍ନ ନବ ସଂଖ୍ୟକ ଭାବରେ ଅଛି ତାହା ସମସ୍ତ ସଂସାରର ବୀଜ ଭୂତ-ପଦାର୍ଥ । ତେଣୁ ଶ୍ରୁତି କହୁଛି—

"ପାଦୋଽସ୍ୟ ବିଶ୍ୱଭୂତାନି" ।

ଉତ୍କଳୀୟ ପୂର୍ବଦିନ ଜଗନ୍ନାଥ ଦେବଙ୍କ ନବାଙ୍କ ଯାତ୍ରା ଯାହା ନିରୂପିତ ଅଛି ତାହା ମଧ୍ୟ ଏହି ସୃଷ୍ଟି ବୀଜପଦଗତ ନବସଂଖ୍ୟାର ସ୍ମାରକ । ଏହା ପୁଣି ସେହି ମନ୍ଦିରର ଚତୁଃପାର୍ଶ୍ୱରେ ନବଧା ଭ୍ରମଣ ରୂପ ନବାଙ୍କ ବେଢ଼ାର ପରିଚୟ ଦେଉଅଛି । ତେଣୁ ବିଶ୍ୱରୂପୀ ଭଗବାନଙ୍କ ରଥଯାତ୍ରା କେବଳ ନବଦିନରେହିଁ ସମାପ୍ତ ହୁଏ ।

ପଣ୍ଡିତମାନଙ୍କ ମତରେ ବର୍ଷା ଶବ୍ଦରୁ ବର୍ଷ ଶବ୍ଦ ସୃଷ୍ଟି ହୋଇଅଛି ଏବଂ ଏହି ବର୍ଷାକାଳ ବା ଋତୁ ସକଳ ଋତୁର ସମଷ୍ଟି ବା ପ୍ରତିନିଧି । ବର୍ଷାହିଁ ମାନବ ସମାଜର ଆଶା ଆନନ୍ଦର ସଂଗ୍ରହକ । ଶତପଥ ବ୍ରାହ୍ମଣରେ ଏହି ବର୍ଷାଋତୁର ପ୍ରଶସ୍ତି ରହିଛି । ତେଣୁ ବୈଦିକ ଯୁଗ ଓ ଇତିହାସରୁ ବର୍ଷାକାଳରେହି ରଥୋତ୍ସବ

ଅନୁଷ୍ଠିତ ହୋଇଆସୁଛି । ବହୁ ପୂର୍ବେ ରଥ ଦେବଲୋକରେ ଥିଲା । ମର୍ତ୍ତ୍ୟରେ ନ ଥିଲା । ଇନ୍ଦ୍ର ଓ ବୃତ୍ରାସୁରଙ୍କ ଯୁଦ୍ଧ ସମୟରୁହିଁ ରଥ ମର୍ତ୍ତରେ ସୃଷ୍ଟି ହେଲା । ଇନ୍ଦ୍ର ବୃତ୍ରାସୁର ଦେହରେ ବଜ୍ର ନିକ୍ଷେପ କରିବାରୁ ବଜ୍ର ଚୂର ଖଣ୍ଡ ହୋଇଯାଇଥିଲା । ତୃତୀୟ ଖଣ୍ଡଟି ରଥରେ ପରିଣତ ହେଲା । ବୋଧହୁଏ ସେହିଦିନଠାରୁ ରଥ ଶବ୍ଦ ମର୍ତ୍ତ୍ୟକୁ ଆସିଥିଲା ଏବଂ ତାର ନିର୍ମାଣ ପଦ୍ଧତି ଏଠାରେ ସୃଷ୍ଟି ହେଲା । ଇନ୍ଦ୍ର ବର୍ଷାର ଅଧିପତି । ରଥ ତାଙ୍କ ବଜ୍ରରୁ ସୃଷ୍ଟି ହୋଇଥିବାରୁ ଏ ଯାତ୍ରା ବର୍ଷା ଆରମ୍ଭରେ ହେବା ସଂଗତ ବୋଧ ହେଉଅଛି ।

ପୂର୍ବରୁ କୁହାଯାଇଛି ଯେ ରଥ ଗଢ଼ିବା ପରମ୍ପରା ଅକ୍ଷୟ ତୃତୀୟାରୁ ଆରମ୍ଭ ହୁଏ । ନନ୍ଦିଘୋଷ ବ୍ୟତୀତ ଜଗନ୍ନାଥଙ୍କ ରଥର ଆଉ ଏକନାମ ଗରୁଡ଼ଧ୍ୱଜ । ବଳଦେବଙ୍କ ରଥର ନାମ ତାଳଧ୍ୱଜ ଏ ରଥର ରହସ୍ୟ ଦୁର୍ବୋଧ । ବଳଦେବ ସ୍ୱୟଂ ଶେଷାବତାର । ସେ ସର୍ବଦା ନିଜ ପୀଠତଳେ ସ୍ୱଚ୍ଛ ଦର୍ପଣ ରଖି ସେହି ଜ୍ଞାନ ଆବରଣରେ ଚରାଚର ବ୍ରହ୍ମାଣ୍ଡକୁ ନିରୀକ୍ଷଣ କରନ୍ତି । ସେ ଦର୍ପଣଟିକୁ ତଳେ ରଖାଯିବାରୁ ତାର ନାମ ତାଳ । ସେହି ଦର୍ପଣ ପରି ସ୍ୱଚ୍ଛତା ବଳଦେବଙ୍କ ଠାରେ ପରିଲକ୍ଷିତ ହେଉଥିବାରୁ ତାଙ୍କ ନାମ ତାଳାଙ୍କ ଓ ସେହି ଅନୁସାରେ ରଥର ନାମ ତାଳଧ୍ୱଜ । ଧ୍ୱଜରେ ଦର୍ପଣର ଚିହ୍ନ ରହେ । ଦେବୀଦଳନ ବ୍ୟତୀତ ସୁଭଦ୍ରାଙ୍କ ରଥର ଆଉ ଏକ ନାମ ପଦ୍ମଧ୍ୱଜ । ଲକ୍ଷ୍ମୀଙ୍କ ନାମ ପଦ୍ମା । ସୁଭଦ୍ରା ଶ୍ରୀ ବା ଲକ୍ଷ୍ମୀ ସ୍ୱରୂପିଣୀ । ସେଥିପାଇଁ ତାଙ୍କ ଧ୍ୱଜରେ ପଦ୍ମଚିହ୍ନ ଥିବାରୁ ରଥର ନାମ ପଦ୍ମଧ୍ୱଜ । ରଥଯାତ୍ରା ପୂର୍ବଦିନ ରଥର ପ୍ରତିଷ୍ଠା ହୁଏ ଓ ମରୁତାଦି ଦେବତାମାନଙ୍କୁ ଆବାହନ ପୂର୍ବକ କଳିଦିଆଯାଏ । ସେମାନେ ନବଦିନବ୍ୟାପୀ ରଥରେ ବିରାଜମାନ

କର ରଥର ସୁରକ୍ଷାରେ ବ୍ରତୀ ହୁଅନ୍ତ । ତେଣୁ ରଥ ଭିତୋଟି ଦେବମୟ ହୋଇଥାଏ । ଏହି ରଥରେ ସକଳପ୍ରକାର ଲୋକେ ଆରୋହଣ କରିବା ଉଚିତ ନୁହେଁ । କେବଳ ସେବାଯୁତମାନେ ଆରୋହଣର ଅଧିକାରୀ । ସୂର୍ଯ୍ୟପୁରାଣରେ ରଥାରୋହଣ ବିଧିର ନିୟମ ଓ ନିର୍ଦ୍ଦେଶ ରହିଛି । ରଥସ୍ଥ ଦେବତାଙ୍କ ଆରାଧନା ଓ ସୁରକ୍ଷା ଯେତେ ଗୁରୁତ୍ୱପୂର୍ଣ୍ଣ ନୁହେଁ ନବଦିନ ପର୍ଯ୍ୟନ୍ତ ରଥର ସୁରକ୍ଷା ଆହୁରି ବେଶୀ ଗୁରୁତ୍ୱପୂର୍ଣ୍ଣ । ରଥସ୍ଥ ଇଷ୍ଟଦେବତାଙ୍କ ଅପେକ୍ଷା ତାଙ୍କ ଆବରଣ ଦେବତା, ଆୟୁଧ ଓ ଯାନାଦିର ସମ୍ମାନରକ୍ଷା କରିବା ସର୍ବାଦୌ କର୍ତ୍ତବ୍ୟ ।

ରଥ ଟଣାହେଲା ବେଳେ ଅତି ଆନନ୍ଦରେ କୌତୁକବଶତଃ ବଳପୂର୍ବକ ଓ ଅସମ୍ମାନ ସହିତ ରଥକୁ ଅତିବେଗରେ ଚଳାଇବା ଶାସ୍ତ୍ର ବିରୁଦ୍ଧ ।

"ଶନୈଃ ଶନୈଃ ରଥୋନେୟ
ରଥ ସ୍ନେହାତ୍ତୁ ଚକ୍ରିଣଃ" ।

ଭଗବାନ ରଥର ବଶ ହୁଅନ୍ତି ଓ ବିଶେଷ ଭାବରେ ରଥ ପ୍ରତି ଆକୃଷ୍ଟ ହୁଅନ୍ତି । ତେଣୁ ଧୀର ମନ୍ଥର ଗତିରେ ରଥ ଟାଣିଲେ ସେ ପରମ ସୁଖ ଓ ଶାନ୍ତି ଅନୁଭବ କରନ୍ତି । ରଥର ଗତି ବ୍ୟଗ୍ର ହେଲେ ରଥର କ୍ଷତି ହୋଇପାରେ । ଦୈବାତ୍ ରଥର କୌଣସି ଅଂଶ ଭାଙ୍ଗି ରୁଜିଗଲେ ଦେଶ ଓ ଜାତିପକ୍ଷରେ ତାହା ଅମଙ୍ଗଳ କାରକ ହୁଏ । ବାହୁଡ଼ାଦଶମୀ ଦିନ ଗୁଣ୍ଡିଚା ମଣ୍ଡପରୁ ଶ୍ରୀ ଜଗନ୍ନାଥାଦି ଦେବତାମାନେ ସ୍ୱ ଯାତାର ଯାତ୍ରା କରନ୍ତି । ସେ ସମୟରେ ଜଗନ୍ନାଥ ପ୍ରଭୁଙ୍କ ଦର୍ଶନ ମୁକ୍ତିପ୍ରଦ ।

"ଗୁଣ୍ଡିଚା ମଣ୍ଡପାତ୍ କୃଷ୍ଣମାୟାନ୍ତଂ ଦକ୍ଷିଣାମୁଖଂ
ରଥସ୍ଥଂ ବଳନଂ ଭଦ୍ରାଂ ପଶ୍ୟନ୍ତୋ ମୁକ୍ତିଭାଗିନଃ ।"

# ଶ୍ରୀ ମନ୍ଦିରର ସଂକ୍ଷିପ୍ତ ଇତିହାସ

ଶ୍ରୀ ମନ୍ଦିରର ନିର୍ମାଣ ଏବଂ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ—ଏହି ଚତୁର୍ବ୍ୟୂହର ପୂଜୋପାସନା ସଂପର୍କରେ ବହୁ କିମ୍ବଦନ୍ତୀ ଓ ଶାସ୍ତ୍ରୀୟ ଉକ୍ତି ଦେଖିବାକୁ ମିଳେ । ଜଗନ୍ନାଥଙ୍କର ପ୍ରାଚୀନ ନାମ **ନୀଳମାଧବ** । ଏହି ଚତୁର୍ଭୁଜ ନୀଳମାଧବ ପୂର୍ବେ ଶବରମାନଙ୍କ ଦ୍ୱାରା ପୂଜା ପାଉଥିଲେ । ପୂଜକ ଶବର ବିଶ୍ୱାବସୁ ଏହି ନୀଳମାଧବଙ୍କୁ ନୀଳ ପର୍ବତର ଏକ କନ୍ଦରରେ ରଖି ପୂଜା କରୁଥିଲେ । ସୁସଭ୍ୟ ଆର୍ଯ୍ୟମାନେ ଏହି ଶ୍ରୀମୂର୍ତ୍ତି ସଂପର୍କରେ କୌଣସି ସମ୍ବାଦ ପାଇ ନ ଥିଲେ । ସୂର୍ଯ୍ୟ ବଂଶୀୟ ମାଳବଦେଶର ରାଜା ଇନ୍ଦ୍ରଦ୍ୟୁମ୍ନ ପରମବୈଷ୍ଣବ ଥିଲେ । ସେ ବିଷ୍ଣୁଙ୍କର ସାକ୍ଷାତ୍କାର ଲାଭ କରିବାକୁ ଅତ୍ୟନ୍ତ ବ୍ୟାକୁଳ ହେଲେ । ଏହି ସମୟରେ ଜନୈକ ବୈଷ୍ଣବ ସନ୍ନ୍ୟାସୀ ଇନ୍ଦ୍ରଦ୍ୟୁମ୍ନଙ୍କ ରାଜ ସଭାରେ ଉପସ୍ଥିତ ହୋଇ ନୀଳମାଧବଙ୍କ ଆତ୍ମପ୍ରକାଶ ଓ ଅବସ୍ଥିତି ସଂପର୍କରେ ସୂଚନା ଦେଲେ । ତଦବଧି ରାଜା ଇନ୍ଦ୍ରଦ୍ୟୁମ୍ନ ନୀଳମାଧବଙ୍କୁ ଦର୍ଶନ କରିବା ପାଇଁ ବିଶେଷ ଉତ୍କଣ୍ଠିତ ହୋଇ ପଡ଼ିଲେ । ରାଜାଙ୍କ ଆଦେଶରେ ବହୁ ବ୍ରାହ୍ମଣ ନୀଳମାଧବଙ୍କ ମୂର୍ତ୍ତି ଅନୁସନ୍ଧାନରେ ବିଭିନ୍ନ ଦିଗକୁ ଯାତ୍ରା କଲେ । କିନ୍ତୁ କେହି କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । ଶେଷରେ ପୁରୋହିତ ଶ୍ରୀ ବିଦ୍ୟାପତି ନୀଳମାଧବଙ୍କର ସନ୍ଧାନ ପାଇଥିଲେ ।

ଶ୍ରୀ ବିଦ୍ୟାପତି ବହୁକଷ୍ଟରେ ଶବର ପଲ୍ଲୀରେ ଉପସ୍ଥିତ ହୋଇ ସେମାନଙ୍କର ଆତିଥ୍ୟ ଗ୍ରହଣ ପୂର୍ବକ ସତ୍କୃତ ହେଲେ । ବିଶ୍ୱାବସୁଙ୍କର କନ୍ୟା ଲଳିତା ବିଦ୍ୟାପତିଙ୍କ ରୂପ ଗୁଣରେ ମୁଗ୍ଧା ହୋଇ ପ୍ରଣୟ ପ୍ରାର୍ଥିନୀ ହେଲେ । ବିଦ୍ୟାପତି ମଧ୍ୟ ଲଳିତାଙ୍କର ରୂପଲାବଣ୍ୟ ଓ ଅନାବିଳ ପ୍ରୀତିରେ ମୁଗ୍ଧ ହୋଇ

ତାଙ୍କର ପାଣିଗ୍ରହଣ କଲେ । ବିଶ୍ୱାବସୁ ଓ ଅନ୍ୟ ଶବରମାନେ ବିଦ୍ୟାପତି ଏବଂ ଲଳିତାଙ୍କର ପ୍ରଣୟ ସଂପର୍କକୁ ଅନୁମୋଦନ କଲେ ମଧ୍ୟ ଶ୍ରୀ ନୀଳମାଧବଙ୍କ ମୂର୍ତ୍ତିକୁ ଦେଖାଇବା ପାଇଁ ରାଜି ହୋଇ ନ ଥିଲେ ।

ପ୍ରତ୍ୟହ ବିଶ୍ୱାବସୁ ନୀଳମାଧବଙ୍କ ପୂଜା ଶେଷ କରି ରାତିରେ ଗୃହକୁ ଫେରନ୍ତି । ସେତେବେଳେ ତାଙ୍କର ଶରୀର ଚନ୍ଦନମହକରେ ସୁବାସିତ ହେଉଥାଏ । ବିଦ୍ୟାପତି ଶ୍ରୀମୂର୍ତ୍ତିଙ୍କୁ ଦର୍ଶନ କରିବା ପାଇଁ ବିଶ୍ୱାବସୁଙ୍କୁ ବହୁ ଅନୁରୋଧ କଲେ । ଶେଷରେ ଲଳିତାର କଥାରେ ବିଶ୍ୱାବସୁ ବିଦ୍ୟାପତିଙ୍କର ଅନୁରୋଧ ରକ୍ଷା କଲେ । କଥିତ ଅଛି, ବିଶ୍ୱାବସୁ ବିଦ୍ୟାପତିଙ୍କର ଚକ୍ଷୁରେ ଅନ୍ଧପୁଟୁଳି ବାନ୍ଧି ଏକ ଦୁର୍ଗମ ମାର୍ଗରେ ନୀଳମାଧବଙ୍କ ନିକଟକୁ ନେଇଥିଲେ । କିନ୍ତୁ ବିଦ୍ୟାପତି କୌଶଳରେ କେତେକ ସୋରିଷ ନିଜ ଯିବା ବାଟରେ ବୁଣି ବୁଣି ଯାଉଥିଲେ । ଏହି ସୋରିଷ ଗଛ ସାହାଯ୍ୟରେ ସେ ପରେ ବାଟ ଠିକ୍ କରିପାରିଲେ । ଶ୍ରୀମୂର୍ତ୍ତିଙ୍କ ନିକଟରେ ପହଞ୍ଚିବା ପରେ ବିଶ୍ୱାବସୁ ବିଦ୍ୟାପତିଙ୍କର ଅନ୍ଧପୁଟୁଳି ଖୋଲିଦେଲେ । ତତ୍ପରେ ଚତୁର୍ଭୁଜ ନୀଳମାଧବଙ୍କର ଶ୍ରୀମୂର୍ତ୍ତି ଦର୍ଶନ କରି ବିଦ୍ୟାପତି ଭଗବତ୍ ପ୍ରେମରେ ଆବିଷ୍ଟ ହୋଇ ପଡ଼ିଲେ । ଏହି ସମୟରେ ବିଶ୍ୱାବସୁ ନୀଳମାଧବଙ୍କର ନୈବେଦ୍ୟ ନିମିତ୍ତ ଅରଣ୍ୟରୁ ଫଳ ମୂଳ ସଂଗ୍ରହ କରିବା ନିମିତ୍ତ ଚାଲିଗଲେ ।

ଇତ୍ୟବସରରେ ବିଦ୍ୟାପତି ଦେଖିଲେ, ନୀଳମାଧବଙ୍କ ସମ୍ମୁଖସ୍ଥ ବୃକ୍ଷରୁ ଏକ ଘୁମନ୍ତ କାକ କୁଣ୍ଡରେ ପଡ଼ି ପ୍ରାଣତ୍ୟାଗ କଲା ଏବଂ ଚତୁର୍ଭୁଜ ନାରାୟଣ ମୂର୍ତ୍ତି ଧାରଣ କରି ବୈକୁଣ୍ଠ ପୁରକୁ ଚାଲିଗଲା । ବିଦ୍ୟାପତି ସାରୂପ୍ୟ ମୁକ୍ତି ଲାଭର ଏହି

ଅପୂର୍ବ ଦୃଶ୍ୟରେ ପ୍ରଲୁବ୍ଧ ହୋଇ ନିଜେ ଆତ୍ମବିସର୍ଜନ କରିବାକୁ ଉଦ୍ୟତ ହେବାରୁ ଦୈବବାଣୀ ଶୁଣି ପାରିଲେ "ହେ ବ୍ରାହ୍ମଣ, ତୁମେ ନୀଳମାଧବଙ୍କ ସନ୍ଧାନ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ପ୍ରଦାନ କରିବାର ବ୍ରତ ବିସ୍ମୃତ ହୁଅନାହିଁ ।" ବିଦ୍ୟାପତି ଏହା ଶୁଣି ଆତ୍ମ ବିସର୍ଜନ କାର୍ଯ୍ୟରୁ ବିରତ ହେଲେ । ଏହାପରେ ବିଶ୍ୱାବସୁ ଫଳମୂଳାଦି ସହ ବନରୁ ପ୍ରତ୍ୟାବର୍ତ୍ତନ କରି ନୀଳମାଧବଙ୍କୁ ନୈବେଦ୍ୟ ଅର୍ପଣ କଲେ । ବିଦ୍ୟାପତି ଏକ ଅଦୃଷ୍ଟ ପୂର୍ବ ଦୃଶ୍ୟ ଦେଖିଲେ ।

ବିଶ୍ୱାବସୁର କି ପ୍ରଗାଢ଼ ଭକ୍ତି ଓ ପତିତପାବନ ନୀଳମାଧବଙ୍କର କି ଅପ୍ରମେୟ କରୁଣା ? ସ୍ୱୟଂ ନୀଳମାଧବ ନିଜ ହସ୍ତରେ ଶବର ପ୍ରଦତ୍ତ ବନଫୁଲ ଗ୍ରହଣ କରୁଥାନ୍ତି । ଏହି ଦୃଶ୍ୟ ସନ୍ଦର୍ଶନରେ ବିଦ୍ୟାପତି ଯୁଗପତ୍ ବିସ୍ମିତ ଓ ଆନନ୍ଦିତ ହେଲେ । ପୂଜା ଶେଷରେ ବିଶ୍ୱାବସୁଙ୍କୁ ଶ୍ରୀ ନୀଳମାଧବ କହିଲେ "ହେ ଭକ୍ତଶ୍ରେଷ୍ଠ ବିଶ୍ୱାବସୁ, ଏ ପର୍ଯ୍ୟନ୍ତ ମୁଁ ଜନସାଧାରଣଙ୍କର ଅଗୋଚରରେ ରହି ତୁମ ପ୍ରଦତ୍ତ ବନର ଫଳ ଓ ଫୁଲ ଗ୍ରହଣ କରି ଆସିଛି । ଅଧୁନା ଭକ୍ତ ଶ୍ରୀ ଇନ୍ଦ୍ରଦ୍ୟୁମ୍ନ ମୋର ପୂଜା କରିବା ପାଇଁ ବିଶେଷ ଉତ୍କଣ୍ଠିତ । ତେଣୁ ମୁଁ ଇନ୍ଦ୍ରଦ୍ୟୁମ୍ନଙ୍କ ଠାରୁ ରାଜୋପଚାରର ପୂଜା ଗ୍ରହଣ କରିବା ପାଇଁ ଇଚ୍ଛା କରୁଛି ।"

"ଶ୍ରୀ ନୀଳମାଧବଙ୍କ ପୂଜାରୁ ବଞ୍ଚିତ ହେବି"—ଏହିକଥା ଭାବି ବିଶ୍ୱାବସୁ ମ୍ରିୟମାଣ ହୋଇପଡ଼ିଲେ ଓ ବିଦ୍ୟାପତିଙ୍କୁ ବନ୍ଦୀକରି ରଖିଲେ । ଶେଷରେ କନ୍ୟା ଲଳିତାଙ୍କର ଅନୁରୋଧରେ ବିଶ୍ୱାବସୁ ବିଦ୍ୟାପତିଙ୍କୁ ମୁକ୍ତ ଦେଲେ । ବିଦ୍ୟାପତି ତତ୍କ୍ଷଣାତ୍ ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ସମ୍ବାଦ ଦେବାପାଇଁ ମାଳବର ରାଜଧାନୀ ଅବନ୍ତୀ ଅଭିମୁଖରେ ଯାତ୍ରାକଲେ ।

ବିଦ୍ୟାପତିଙ୍କ ଠାରୁ ଶ୍ରୀମୂର୍ତ୍ତିଙ୍କର ସମ୍ବାଦପାଇ ରାଜା ଇନ୍ଦ୍ରଦ୍ୟୁମ୍ନ ଆନନ୍ଦରେ ବିହ୍ୱଳ ହୋଇପଡ଼ିଲେ ଏବଂ ନୀଳମାଧବଙ୍କୁ ଦର୍ଶନ କରିବାପାଇଁ ପାତ୍ର, ମନ୍ତ୍ରୀ, ସଭାସଦ୍ ଓ ସୈନ୍ୟସାମନ୍ତଙ୍କ ସହିତ ନୀଳଗିରି ଅଭିମୁଖେ ଯାତ୍ରା ଆରମ୍ଭ କଲେ । ବିଦ୍ୟାପତି ଯାତ୍ରୀ-ମାନଙ୍କର ପଥପ୍ରଦର୍ଶକ ହୋଇଥାନ୍ତି ।

ଏହି ସମୟରେ ଏକ ଅଦ୍ଭୁତ ଘଟଣା ଘଟିଲା । ମୃତ୍ୟୁରାଜ ଯମ ନାରଦଙ୍କ ଠାରୁ ସମ୍ବାଦ ପାଇଲେ, "ରାଜାଇନ୍ଦ୍ରଦ୍ୟୁମ୍ନ ସୈନ୍ୟସାମନ୍ତ ସହ ନୀଳମାଧବଙ୍କ ଦର୍ଶନ ଉଦ୍ଦେଶ୍ୟରେ ଯାତ୍ରା କରୁଛନ୍ତି ।" ସାକ୍ଷାତ୍ ବିଷ୍ଣୁ ସ୍ୱରୂପ ଶ୍ରୀ ନୀଳମାଧବଙ୍କ ଦର୍ଶନରେ ଜୀବମାନେ ସାରୂପ୍ୟ ମୁକ୍ତିଲଭକରି ବୈକୁଣ୍ଠଗାମୀ ହୁଅନ୍ତି । ସେମାନେ ମୃତ୍ୟୁର ଅଧୀନ ହୁଅନ୍ତି ନାହିଁ । ତେଣୁ ଇନ୍ଦ୍ରଦ୍ୟୁମ୍ନ ଜନସାଧାରଣଙ୍କ ସହିତ ଏହି ଶ୍ରୀମୂର୍ତ୍ତିର ଦର୍ଶନ ଲାଭ କରିପାରିଲେ ସେମାନେ ଯମ ନିୟନ୍ତ୍ରଣରୁ ମୁକ୍ତ ହେବେ । ଫଳରେ ମୃତ୍ୟୁରାଜ ଯମ ଜୀବଜଗତ ଉପରେ ସ୍ୱୀୟ ଆଧିପତ୍ୟ ବିସ୍ତାର କରିପାରିବେନାହିଁ । ତେଣୁ ଯମ ନିଜର କର୍ତ୍ତବ୍ୟ ସମ୍ପାଦନରେ ଅକ୍ଷମ ହେବେ । ଏହି ସମ୍ବାଦରେ ଯମରାଜାଙ୍କ ସମେତ ସମସ୍ତ ଦେବତା ଚିନ୍ତାକୁଳ ହେଲେ ଏବଂ ପ୍ରତିକାର ପାଇଁ ବିଷ୍ଣୁଙ୍କୁ ପ୍ରାର୍ଥନା କଲେ । ବିଷ୍ଣୁ ଦେବତା-ମାନଙ୍କୁ ଆଶ୍ୱାସନା ଦେଲେ; "ଜୀବମାନେ ଯମରାଜାଙ୍କ ନିୟନ୍ତ୍ରଣରୁ ମୁକ୍ତହୋଇ ପାରିବେ ନାହିଁ ଓ ଶ୍ରୀ ନୀଳମାଧବଙ୍କମୂର୍ତ୍ତି ଅନ୍ତର୍ଦ୍ଧାନ ହେବ ।" ପ୍ରକୃତପକ୍ଷରେ ଶ୍ରୀ ନୀଳମାଧବଙ୍କମୂର୍ତ୍ତି ସେହି ସ୍ଥାନରୁ ଅନ୍ତର୍ହିତ ହୋଇଗଲା । ପଥମଧ୍ୟରେ ରାଜା ଇନ୍ଦ୍ରଦ୍ୟୁମ୍ନ ଏହି ମୂର୍ତ୍ତିର ଅନ୍ତର୍ଦ୍ଧାନ ସମ୍ବାଦପାଇ ବ୍ୟଥିତ ହେଲେ । ବିଷ୍ଣୁଙ୍କ ସାକ୍ଷାତ ଦର୍ଶନରୁ ବଂଚିତ ହୋଇ ରାଜା ଇନ୍ଦ୍ରଦ୍ୟୁମ୍ନ ଆତ୍ମହତ୍ୟା କରିବାକୁ ଉଦ୍ୟତ ହୁଅନ୍ତେ ଠିକ୍ ସେହି ସମୟରେ ଆକାଶବାଣୀ ହେଲା,

"ହେ ଭକ୍ତ ଶ୍ରେଷ୍ଠ ଇନ୍ଦ୍ରଦ୍ୟୁମ୍ନ ; ତୁମେ ଚିନ୍ତିତ ହୁଅନାହିଁ । ନୀଳଗିରି ଉପରେ ତୁମେ ମନ୍ଦିର କରି ମୋର ଦାରୁବ୍ରହ୍ମ ମୂର୍ତ୍ତି ପ୍ରତିଷ୍ଠା କର । ନୀଳମାଧବ ମୂର୍ତ୍ତି ତୁମେ ଦର୍ଶନ କରିପାରିବ ନାହିଁ ।" ଆକାଶବାଣୀ ଶ୍ରବଣରେ ଇନ୍ଦ୍ରଦ୍ୟୁମ୍ନଙ୍କର କ୍ଷୋଭ ଦୂରହେଲା ଏବଂ ଦାରୁବ୍ରହ୍ମଙ୍କର ସନ୍ଧାନ ପାଇବା ପାଇଁ ବିଷ୍ଣୁଙ୍କ ଶରଣାଗତ ହେଲେ ।

ପ୍ରବାଦଅଛି ଯେ, ଇନ୍ଦ୍ରଦ୍ୟୁମ୍ନ ନୀଳଗିରିରେ ଶ୍ରୀ ମାଧବମୂର୍ତ୍ତି ନ ଦେଖି କ୍ରୋଧରେ ଶବର ପଲ୍ଲୀକୁ ଅବରୋଧ କଲେ । ତାଙ୍କର ଧାରଣା ହେଲା, ସମ୍ଭବତଃ ବିଶ୍ୱାବସୁ ଏହି ମୂର୍ତ୍ତିକୁ କେଉଁଠାରେ ଲୁକ୍କାୟିତକରି ରଖିଛି । ପରେ ଆକାଶବାଣୀ ଶ୍ରବଣକରି ତାଙ୍କର ମୋହ ଦୂରହେଲା ଏବଂ ସେ ଦାରୁବ୍ରହ୍ମଙ୍କ ସନ୍ଧାନ ପାଇବାପାଇଁ ବିଷ୍ଣୁଙ୍କୁ ଆରାଧନା କଲେ ।

ଦିନେ ରାଜା ଇନ୍ଦ୍ରଦ୍ୟୁମ୍ନ ସ୍ୱପ୍ନ ଦେଖିଲେ ଯେ, ଏକ ଅଲୌକିକ ଦାରୁ ସମୁଦ୍ରରେ ଭାସି ଭାସି କୂଳରେ ଲାଗିଅଛି । ପରଦିନ ପ୍ରଭାତରୁ ରାଜା ପାତ୍ରମନ୍ତ୍ରୀଙ୍କ ସହିତ ସମୁଦ୍ରକୂଳକୁ ଯାଇଁ ଦାରୁର ସନ୍ଧାନ ପାଇଲେ । ଯେଉଁ ସ୍ଥାନରେ ଇନ୍ଦ୍ରଦ୍ୟୁମ୍ନ ଦାରୁର ସନ୍ଧାନ କରିଥିଲେ, ସେହି ସ୍ଥାନଟି "ବାଙ୍କିମୁହାଣ" ନାମରେ ପରିଚିତ । ଉକ୍ତ ଦାରୁରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମର ଚିହ୍ନଦେଖି ଇନ୍ଦ୍ରଦ୍ୟୁମ୍ନ ଓ ଜନସାଧାରଣ ଆନନ୍ଦରେ ଗଦ୍ ଗଦ୍ ହେଲେ । ରାଜା ସୈନ୍ୟ-ସାମନ୍ତ ଓ ହାତୀ ଦ୍ୱାରା ଦାରୁକୁ ସେଠାରୁ ଆଣିବା ପାଇଁ ଚେଷ୍ଟା କଲେ । କିନ୍ତୁ ସେମାନଙ୍କର ବହୁଚେଷ୍ଟା ସତ୍ତ୍ୱେ ଦାରୁ ଅବିଚଳିତ ଭାବେ ସେହି ଠାବରେହିଁ ରହିଲା । ଉକ୍ତ ଘଟଣାରେ ରାଜା ଚିନ୍ତିତ ହୋଇ ଜଗନ୍ନାଥଙ୍କୁ ସ୍ମରଣ କଲେ । ରାତିରେ ସ୍ୱୟଂ ଜଗନ୍ନାଥ ଇନ୍ଦ୍ରଦ୍ୟୁମ୍ନଙ୍କୁ ସ୍ୱପ୍ନରେ କହିଲେ, "ମୋର ପୂର୍ବସେବକ ବିଶ୍ୱାବସୁଙ୍କୁ

ଏଠାକୁ ଆଣ ଏବଂ ମୋତେ ନେବାପାଇଁ ଗୋଟିଏ ସୁବର୍ଣ୍ଣରଥ ପ୍ରସ୍ତୁତ କର ଦାରୁବ୍ରହ୍ମର ସମ୍ମୁଖରେ ସ୍ଥାପନ କର ।" ରାଜା ଏହି ସ୍ୱପ୍ନାଦେଶ ଅନୁସାରେ ବିଶ୍ୱାବସୁଙ୍କୁ ନିମନ୍ତ୍ରଣ କରି ଆଣିଲେ ଓ ଗୋଟିଏ ସୁବର୍ଣ୍ଣର ରଥ ପ୍ରସ୍ତୁତ କଲେ । ଦାରୁବ୍ରହ୍ମଙ୍କର ଏକପାର୍ଶ୍ୱ ବିଶ୍ୱାବସୁ ଓ ଅପର ପାର୍ଶ୍ୱ ବିଦ୍ୟାପତି ଧାରଣ କଲେ । ରାଜା ଇନ୍ଦ୍ରଦ୍ୟୁମ୍ନ ଦାରୁ ବ୍ରହ୍ମଙ୍କର ଶ୍ରୀଚରଣ ଧାରଣା ପୂର୍ବକ ରଥରେ ଆରୋହଣ କରିବାକୁ ପ୍ରାର୍ଥନା କଲେ । ତତ୍ପରେ ଦାରୁବ୍ରହ୍ମ ରଥରେ ଆରୋହଣ କଲେ ଏବଂ ରାଜା ତାଙ୍କୁ ନିର୍ଦ୍ଦିଷ୍ଟ ସ୍ଥାନକୁ ନେଇ ଆସିଲେ ।

ଏହି ସମୟରେ ବ୍ରହ୍ମା ନୀଳଗିରିରେ ଯଜ୍ଞ ଆରମ୍ଭ କଲେ ଏବଂ ସେତେବେଳେ ନୃସିଂହଦେବ ଯଜ୍ଞବେଦୀରେ ଅବସ୍ଥାନ କରୁଥିଲେ । ବର୍ତ୍ତମାନ ଯେଉଁ ସ୍ଥାନରେ ଶ୍ରୀମନ୍ଦିର ବିରାଜମାନ ହୋଇଛି ସେହି ସ୍ଥାନରେ ବ୍ରହ୍ମା ଯଜ୍ଞ କରିଥିଲେ ବୋଲି ପ୍ରବାଦ ଅଛି । ମୁକ୍ତିମଣ୍ଡପର ପଶ୍ଚିମ ଦିଗକୁ ଯେଉଁ ନୃସିଂହ ମୂର୍ତ୍ତି ପୂଜା ପାଉଛନ୍ତି ସେହି ନୃସିଂହ ଆଦିନୃସିଂହ ନାମରେ ପରିଚିତ ଏବଂ ଯଜ୍ଞସମୟରେ ସେହି ନୃସିଂହ ଦେବ ଯଜ୍ଞବେଦୀରେ ଅବସ୍ଥାପିତ ହୋଇଥିଲେ । ଇନ୍ଦ୍ରଦ୍ୟୁମ୍ନ ମହାରାଜା ଦାରୁଙ୍କୁ ଶ୍ରୀମୂର୍ତ୍ତିରୂପେ ପ୍ରକଟ କରିବା ପାଇଁ ବହୁ ଦକ୍ଷଶିଳ୍ପୀଙ୍କୁ ଆହ୍ୱାନ କରିଥିଲେ କିନ୍ତୁ ସେମାନଙ୍କ ମଧ୍ୟରୁ କେହିହେଲେ ଦାରୁବ୍ରହ୍ମଙ୍କୁ ସ୍ପର୍ଶକରି ପାରିଲେ ନାହିଁ । ସମସ୍ତଙ୍କର ନିହାଣ, ମୁଗୁର ପ୍ରଭୃତି ନିର୍ମାଣ ଉପକରଣ ଖଣ୍ଡବିଖଣ୍ଡ ହୋଇଗଲା । ଏଥିରେ ରାଜା ବିଚଳିତ ହୋଇ ବିଷ୍ଣୁଙ୍କୁ ଆରାଧନା କଲେ । ଶେଷରେ ସ୍ୱୟଂ ଭଗବାନ ଛଦ୍ମରୂପରେ ଶ୍ରୀ ଅନନ୍ତ ମହାରଣା ନାମରେ ଜଣେ ବୃଦ୍ଧ ଶିଳ୍ପୀବେଶରେ ଇନ୍ଦ୍ରଦ୍ୟୁମ୍ନଙ୍କ ନିକଟରେ ଉପସ୍ଥିତ ହେଲେ

ଏବଂ ୨୧ ଦିନ ମଧ୍ୟରେ ଶ୍ରୀବିଗ୍ରହ ପ୍ରକଟିତ କରିବେ ବୋଲି ରାଜାଙ୍କୁ ଜଣାଇଲେ । ଏଥିରେ ଇନ୍ଦ୍ରଦ୍ୟୁମ୍ନ ପ୍ରୀତହୋଇ ବୃଦ୍ଧଶିଳ୍ପୀଙ୍କୁ ବିଗ୍ରହ ନିର୍ମାଣ କାର୍ଯ୍ୟରେ ନିଯୁକ୍ତ କଲେ । ବୃଦ୍ଧଶିଳ୍ପୀଙ୍କ ନିର୍ଦ୍ଦେଶାନୁସାରେ ରାଜା ଅନ୍ୟ ଶିଳ୍ପୀମାନଙ୍କ ଦ୍ୱାରା ତିନୋଟି ରଥ ପ୍ରସ୍ତୁତ କରିବାକୁ ଆଦେଶ ଦେଲେ ।

ବୃଦ୍ଧଶିଳ୍ପୀ ଦାରୁଙ୍କୁ ନେଇ ଶ୍ରୀମନ୍ଦିରରେ ଦ୍ୱାର ରୁଦ୍ଧକରି ମୂର୍ତ୍ତିନିର୍ମାଣ କଲେ । ସେ ରାଜାଙ୍କୁ ଆଦେଶ ଦେଇଥିଲେ; "ଏକୋଇଶ ଦିନ ପର୍ଯ୍ୟନ୍ତ ମନ୍ଦିରର ଦ୍ୱାର ଅବରୁଦ୍ଧ ରହିବ ଏବଂ କୌଣସି ବ୍ୟକ୍ତି ସେଠାକୁ ଯାଇ ପାରିବେ ନାହିଁ । ଇନ୍ଦ୍ରଦ୍ୟୁମ୍ନ ଏହି ଆଦେଶ ପାଳନ କରିବା ପାଇଁ ପ୍ରତିଜ୍ଞାବଦ୍ଧ ହୋଇଥିଲେ । ଦୁଇସପ୍ତାହପରେ ମନ୍ଦିରମଧ୍ୟରୁ ମୂର୍ତ୍ତିନିର୍ମାଣରେ କୌଣସି ଶବ୍ଦ ଶୁଣି ନ ପାରି ରାଜା ଉତ୍କଣ୍ଠିତ ହୋଇପଡ଼ିଲେ । ସମ୍ଭବତଃ ଶ୍ରୀମନ୍ଦିର ମଧ୍ୟରେ ବୃଦ୍ଧଶିଳ୍ପୀ ପ୍ରାଣତ୍ୟାଗ କଲେଣି ବୋଲି ରାଜା ଚିନ୍ତାକଲେ ଏବଂ ଦ୍ୱାର ଉନ୍ମୁକ୍ତ କରିବାପାଇଁ ଇଚ୍ଛାକଲେ । ମହାରାଣୀ ମଧ୍ୟ ଅନୁରୂପ ଚିନ୍ତାରେ ଉତ୍କଣ୍ଠିତା ହେଲେ । ବିଦ୍ୟାପତି ଓ ମନ୍ତ୍ରୀଙ୍କର ନିବାରଣ ସତ୍ତ୍ୱେ ସ୍ୱୟଂ ଇନ୍ଦ୍ରଦ୍ୟୁମ୍ନ ଶ୍ରୀମନ୍ଦିରର ଦ୍ୱାର ଉନ୍ମୁକ୍ତ କରିଦେଲେ । "କିନ୍ତୁ ହାୟ; ସେ ବୃଦ୍ଧ ସୂତ୍ରଧରଙ୍କୁ ଦେଖିବାକୁ ପାଇଲେ ନାହିଁ । କେବଳ ଦାରୁବ୍ରହ୍ମ ତିନୋଟି ଶ୍ରୀମୂର୍ତ୍ତିରୂପେ ପ୍ରକାଶିତ ହୋଇଥିବାର ଦେଖିଲେ । ପୁନଶ୍ଚ ସେ ସମ୍ମୁଖକୁ ଯାଇଁ ଦେଖିଲେ ଯେ ଶ୍ରୀ ମୂର୍ତ୍ତିମାନଙ୍କର ହସ୍ତର ଅଙ୍ଗୁଳିସମୂହ ଓ ପାଦପଦ୍ମ ପ୍ରକଟିତ ହୋଇନାହିଁ ।" ମନ୍ତ୍ରୀ ପ୍ରକାଶ କଲେ "ଏହି ବୃଦ୍ଧଶିଳ୍ପୀ ସ୍ୱୟଂ ଜଗନ୍ନାଥ । ଏକୋଇଶ ଦିନପରେ ପୂର୍ଣ୍ଣ ଅବୟବ ସହିତ ଶ୍ରୀମୂର୍ତ୍ତିମାନେ ପ୍ରକାଶିତ ହୋଇଥାନ୍ତେ । ରାଜା ନିର୍ଦ୍ଦିଷ୍ଟ ସମୟପୂର୍ବରୁ ଦ୍ୱାର ଉନ୍ମୁକ୍ତ କରିବାରୁ ଅପୂର୍ଣ୍ଣ

କଳେବରରେ ଶ୍ରୀମୂର୍ତ୍ତିଙ୍କୁ ଦେଖିବାକୁ ପାଇଲେ ।" ଇନ୍ଦ୍ରଦ୍ୟୁମ୍ନ ନିଜର ପ୍ରତିଜ୍ଞା ପାଳନରେ ତ୍ରୁଟି କରିଥିବାରୁ ଅନୁଶୋଚନା କଲେ । ନିଜକୁ ଅପରାଧୀ ଭାବି ଅନାହାରରେ ପ୍ରାଣ ବିସର୍ଜନ କରିବାକୁ ଚିନ୍ତାକଲେ ଓ ମହାଚିନ୍ତାରେ କୁଶ ଶଯ୍ୟାରେ ଶୟନ କଲେ । ସ୍ୱୟଂ ଜଗନ୍ନାଥ ରାଜାଙ୍କୁ ସ୍ୱପ୍ନରେ ଦର୍ଶନଦେଇ ସାନ୍ତ୍ୱନା ଦେଲେ ଏବଂ କହିଲେ, "ମୁଁ ଏହି ପତିତପାବନ ରୂପରେ ପୁରୁଷୋତ୍ତମ ନାମରେ ନୀଳାଚଳରେ ଅବସ୍ଥାନ କରିବି । ମୋର ହସ୍ତ ପଦାଦି ଅବୟବ ଦୃଶ୍ୟ ନହେଲେ ମଧ୍ୟ ମୁଁ ଅନୁରାଗୀ ଭକ୍ତମାନଙ୍କର ସେବାପୂଜା, ଅର୍ଚ୍ଚନା, ବନ୍ଦନା ପ୍ରଭୃତି ଗ୍ରହଣ କରିବି । ମୋର ଅପ୍ରାକୃତ ନିତ୍ୟ ଲୀଳାର ମାଧୁର୍ଯ୍ୟ ବିତରଣ ନିମିତ୍ତ ମୁଁ ଏହି ରୂପରେ ପ୍ରକାଶିତ ହୋଇଅଛି ।

ମାଧୁର୍ଯ୍ୟରସାଶ୍ରିତ ସେବକ ମୋତେ କୃଷ୍ଣ ରୂପରେ ଦର୍ଶନ କରିବେ । ରାଜାଇନ୍ଦ୍ରଦ୍ୟୁମ୍ନ ସ୍ୱୟଂ ଜଗନ୍ନାଥଙ୍କର ଏହି ବାଣୀ ଶ୍ରବଣକରି କୃତକୃତ୍ୟ ହେଲେ ଏବଂ ଅନୁରୋଧ କଲେ, "ଯେଉଁ ସୂତ୍ରଧର ଏହି ମୂର୍ତ୍ତିମାନଙ୍କୁ ପ୍ରକଟ କରିଛନ୍ତି, ତାଙ୍କର ବଂଶଧର-ମାନେ ଯୁଗେ ଯୁଗେ ଜୀବିତ ରହି ରଥନିର୍ମାଣ କରିବେ ।" ଜଗନ୍ନାଥ ରାଜାଙ୍କର ଏହି ମନୋରଥ ପୂରଣ କରି କହିଲେ, "ଯେଉଁ ଭକ୍ତଶ୍ରେଷ୍ଠ ବିଶ୍ୱାବସୁ ମୋତେ ନୀଳମାଧବ ରୂପରେ ପୂଜାକରି ଆସିଛନ୍ତି ତାଙ୍କର ବଂଶଧରମାନେ ଦଇତା ସେବକ ନାମରେ ପରିଚିତହୋଇ ଶ୍ରୀମନ୍ଦିରରେ ମୋର ସେବା କରିବେ । ବିଦ୍ୟାପତିଙ୍କର ବ୍ରାହ୍ମଣପତ୍ନୀଗର୍ଭଜାତ ସନ୍ତାନମାନେ ମୋତେ ପୂଜା ଅର୍ଚ୍ଚନା କରିବେ ଏବଂ ବିଦ୍ୟାପତିଙ୍କର ଶବରୀ ଗର୍ଭଜାତ ସନ୍ତାମାନେ ମୋର ଭୋଗରନ୍ଧନ କାର୍ଯ୍ୟରେ ନିଯୁକ୍ତ ରହିବେ । ସେମାନେ 'ସୁଆର' ନାମରେ ପରିଚିତ ହେବେ ।"

ମହାରାଜ ଇନ୍ଦ୍ରଦ୍ୟୁମ୍ନ ଜଗନ୍ନାଥଙ୍କର ଏହି ଆଦେଶକୁ ଶିରୋଧାର୍ଯ୍ୟ କରି ନିଜକୁ ଧନ୍ୟମଣିଲେ ଏବଂ ପ୍ରାର୍ଥନା କଲେ, "ପ୍ରତ୍ୟହ ମାତ୍ର ଏକପ୍ରହର ଆପଣଙ୍କର ଦ୍ୱାର ବନ୍ଦରହିବ । ଅନ୍ୟସମୟରେ ଆପଣ ଜନସାଧାରଣଙ୍କୁ ଦର୍ଶନଦେଇ ମୁକ୍ତିପ୍ରଦାନ କରିବେ । ସଦାସର୍ବଦା ଶ୍ରୀମନ୍ଦିରରେ ଭୋଗ, ନୈବେଦ୍ୟ ଓ ଭୋଜନ ହେଉଥିବ ।" ଶ୍ରୀଜଗନ୍ନାଥ ଇନ୍ଦ୍ରଦ୍ୟୁମ୍ନଙ୍କର ଏହି ମନୋବାଞ୍ଛା ପୂରଣ କରିବା ପାଇଁ ବରଦେଲେ ଏବଂ ନିଜପାଇଁ କୌଣସି ବରମାଗିବାକୁ ଇନ୍ଦ୍ରଦ୍ୟୁମ୍ନଙ୍କୁ କହିଲେ । ଶ୍ରେଷ୍ଠଭକ୍ତ ରାଜା ଇନ୍ଦ୍ରଦ୍ୟୁମ୍ନ ଅଦ୍ଭୁତ ବର ମାଗିଲେ, "ଶ୍ରୀମନ୍ଦିର କୀର୍ତ୍ତିପାଇଁ ଗର୍ବକରିବାକୁ ମୋର ବଂଶରେ କେହି ଯେପରି ନରୁହନ୍ତୁ । ମୋର ବଂଶ ନିର୍ବଂଶ ହେଉ ।" ଭକ୍ତର ଏହି ବରଟି ମଧ୍ଯ ଭଗବାନ ପୂରଣ କଲେ । ବୃଷ୍ଣି ବଂଶର ସନ୍ତାନମାନେ ଭଗବାନ୍ ଶ୍ରୀକୃଷ୍ଣଙ୍କର ଅଦ୍ଭୁତ କାର୍ଯ୍ୟକଳାପରେ ହୃଷ୍ଟ ପ୍ରବର୍ଦ୍ଧିତ ହେବେ ଏବଂ ଅହଙ୍କାରୀ ହୋଇ ଅବମୋଚ ହେବେ ! ଏହି ଆଶଙ୍କାରେ ଶ୍ରୀକୃଷ୍ଣ ମାୟାରେ ନିଜର ବଂଶ ନାଶ କଲପରି ନରଭିମାନ ରାଜା ଇନ୍ଦ୍ରଦ୍ୟୁମ୍ନ ନିଜର ବଂଶନାଶ ପାଇଁ ବର ମାଗିନେଲେ ।

ଶ୍ରୀକ୍ଷେତ୍ରରେ ପୁରୁଷୋତ୍ତମ ଦେବଙ୍କ ଆରାଧନା ଓ ଶ୍ରୀମନ୍ଦିରର ଅବସ୍ଥିତି ସଂପର୍କରେ ବହୁ ଶାସ୍ତ୍ରୀୟ ଉଲ୍ଲେଖ ରହିଅଛି । ନାରଦ ପୁରାଣରେ ବର୍ଣ୍ଣିତ ଅଛି, "ପୁରୁଷୋତ୍ତମ କ୍ଷେତ୍ରନାମରେ ତ୍ରିଲୋକଦୁର୍ଲଭ ମହାତୀର୍ଥ ସ୍ୱୟଂ ବିଷ୍ଣୁଙ୍କ ଦ୍ୱାରା ନିର୍ମିତ ହୋଇଅଛି । ଏହି କ୍ଷେତ୍ରରେ ପୂଜାପାଉଥିବା ଦେବନିର୍ମିତ ଶ୍ରୀମୂର୍ତ୍ତିଙ୍କୁ ଦର୍ଶନକରି ପ୍ରାଣୀମାନେ ବୈକୁଣ୍ଠ ପୁରକୁ ଗମନକରନ୍ତି ।

"ପ୍ରତିମାଂ ତତ୍ର ତାଂ ଦୃଷ୍ଟ୍ୱା ସ୍ୱୟଂଦେବେନ ନିର୍ମିତାମ୍
ଅନାୟାସେନ ବୈଯାନ୍ତି ଭବନଂ ମେ ତତୋ ନରାଃ ।"

( ନା. ପୁ. ଉ. ଖ. ୫୨/୧୨ )

ପୁନଶ୍ଚ ଏଥିରେ ଉଲ୍ଲେଖ ଅଛି ଯେ ସତ୍ୟଯୁଗରେ ମହାରାଜା ଇନ୍ଦ୍ରଦ୍ୟୁମ୍ନ ବିଷ୍ଣୁଙ୍କ ପୂଜାକରିବା ପାଇଁ ସ୍ଥିରକରି ଶ୍ରୀକ୍ଷେତ୍ରକୁ ଆସିଥିଲେ ଏବଂ ଶ୍ରୀକ୍ଷେତ୍ରରେ ଅଶ୍ୱମେଧ ଯଜ୍ଞ କରି ବ୍ରାହ୍ମଣ ବସତି ସ୍ଥାପନ କଲେ । ସେ ଶ୍ରୀମନ୍ଦିର ନିର୍ମାଣ କରି ସ୍ୱପ୍ନାଦିଷ୍ଟପୂର୍ବକ ସମୁଦ୍ରବେଳାରେ ଦାରୁବ୍ରହ୍ମଙ୍କୁ ଦର୍ଶନ କରିଥିଲେ । ସ୍ୱୟଂ ବିଷ୍ଣୁ ବ୍ରାହ୍ମଣ ବେଶଧାରୀ ବିଶ୍ୱକର୍ମା ରୂପରେ ଇନ୍ଦ୍ରଦ୍ୟୁମ୍ନଙ୍କୁ ସାକ୍ଷାତ ଦେଇ ମୂର୍ତ୍ତି ନିର୍ମାଣ କରିଥିଲେ ଏବଂ ରାଜା ଏହି ଶ୍ରୀମୂର୍ତ୍ତିମାନଙ୍କୁ ମନ୍ଦିରର ସିଂହାସନରେ ଅବସ୍ଥାପିତ କରାଇ ପୂଜା ଅର୍ଚ୍ଚନା କରିଥିଲେ ।

ସ୍କନ୍ଦପୁରାଣୋକ୍ତ ଉତ୍କଳ ଖଣ୍ଡରେ ପ୍ରାୟ ଅନୁରୂପ ବର୍ଣ୍ଣନା ଦେଖାଯାଏ । ବ୍ରହ୍ମା ଚରାଚର ଜୀବଜଗତ ସୃଷ୍ଟିକଲା ପରେ ଜୀବମାନଙ୍କୁ ତ୍ରିତାପରୁ ମୁକ୍ତିଦେବାର ଉପାୟ ଚିନ୍ତାକରି ବିଷ୍ଣୁଙ୍କର ଶରଣାପନ୍ନ ହେଲେ । ଭଗବାନ ବିଷ୍ଣୁ ବ୍ରହ୍ମାଙ୍କୁ କହିଲେ, "ନୀଳଗିରି ଅନ୍ତର୍ଗତ ପୁରୁଷୋତ୍ତମ କ୍ଷେତ୍ର ପୃଥିବୀରେ ଗୋପନୀୟ ଓ ସୁଦୁର୍ଲଭ । ସିନ୍ଧୁତଟରେ ଶୋଭା ପାଉଥିବା ଏହି ପବିତ୍ର ସ୍ଥାନ ମୋର ନିତ୍ୟ ବାସସ୍ଥଳୀ । ତେଣୁ ନୀଳାଚଳରେ ଅବସ୍ଥାନ ପୂର୍ବକ ମୋତେ ଦର୍ଶନକରି ଜୀବମାନେ ତ୍ରିତାପରୁ ମୁକ୍ତ ହେବେ ଓ ସାରୂପ୍ୟ ମୁକ୍ତି ଲାଭକରି ଚତୁର୍ଭୁଜ ହୋଇ ବୈକୁଣ୍ଠରେ ସୁଖଭୋଗ କରିବେ । ଏହି ନୀଳାଚଳର ରୋହିଣୀ କୁଣ୍ଡରେ ସ୍ନାନ ଓ ଜଳପାନକରି କୌଣସି କାକ ଚତୁର୍ଭୁଜ ହେବାର ଦେଖି ବ୍ରହ୍ମା ଚମତ୍କୃତ ହେଲେ । ଧର୍ମରାଜ ଯମ ଏହି ସମ୍ବାଦ ପାଇଁ ନୀଳାଚଳରେ ଉପସ୍ଥିତ ହେଲେ । ସେଠାରେ ବସବାସ କରୁଥିବା ପ୍ରାଣୀମାନେ ଯମଙ୍କ ଆଗମନରେ ଭୟଭୀତ ନହୋଇ ଯମଙ୍କୁ ଅବଜ୍ଞା କଲେ । ସ୍ୱୟଂ ଯମ ସେମାନଙ୍କ ଉପରେ ନିଜର ନିୟନ୍ତ୍ରଣ ନଥିବାର ଦେଖି କ୍ଷୁବ୍ଧ ହେଲେ । କୃପାମୟୀ

ଲକ୍ଷ୍ମୀ ଯମଙ୍କୁ କହିଲେ, "ନୀଳାଚଳରେ ସ୍ୱୟଂ ବିଷ୍ଣୁ ଅବସ୍ଥାନ କରୁଛନ୍ତି । ତେଣୁ ଏହି କ୍ଷେତ୍ରରେ ଯେଉଁମାନେ ଦେହତ୍ୟାଗ କରନ୍ତି, ସେମାନେ ମୃତ୍ୟୁରାଜଙ୍କ ଅଧିକାରର ବହିର୍ଭୂତ ।" ପରାର୍ଦ୍ଧକାଳ ପର୍ଯ୍ୟନ୍ତ ଲକ୍ଷ୍ମୀଦେବୀଙ୍କ ସହ ନୀଳମାଧବ ନୀଳକାନ୍ତ ମଣିମୟ ଶ୍ରୀମୂର୍ତ୍ତିରେ ପ୍ରକଟହୋଇ ଦ୍ୱିତୀୟ ପରାର୍ଦ୍ଧର ପ୍ରାରମ୍ଭରେ ଶ୍ୱେତବରାହ କଳ୍ପରେ ସ୍ୱାୟମ୍ଭୁବ ମନ୍ୱନ୍ତରରେ ପଞ୍ଚମ ବ୍ରହ୍ମାରୂପେ ଖ୍ୟାତ ଇନ୍ଦ୍ରଦ୍ୟୁମ୍ନଙ୍କ ଆଗମନପୂର୍ବରୁ ଅନ୍ତର୍ହିତ ହୋଇଥିଲେ । ଅବନ୍ତୀରାଜ ଇନ୍ଦ୍ରଦ୍ୟୁମ୍ନ ଚର୍ମଚକ୍ଷୁରେ ଭଗବଦ୍ଦର୍ଶନ ପାଇଁ ବ୍ୟାକୁଳ ଥିବା ଅବସ୍ଥାରେ କୌଣସି ଜଟାଧାରୀ ସନ୍ନ୍ୟାସୀଙ୍କ ଠାରୁ ଶ୍ରୀକ୍ଷେତ୍ରସ୍ଥ ନୀଳମାଧବ ମୂର୍ତ୍ତିର ସନ୍ଧାନପାଇଥିଲେ । ବିଦ୍ୟାପତିଙ୍କ ଦ୍ୱାରା ନୀଳମାଧବ ମୂର୍ତ୍ତିର ସନ୍ଧାନପାଇ ଇନ୍ଦ୍ରଦ୍ୟୁମ୍ନ ସୈନ୍ୟ-ସାମନ୍ତ ସହ ଶ୍ରୀକ୍ଷେତ୍ର ଅଭିମୁଖେ ଯାତ୍ରାକଲେ । ପଥରେ ସମ୍ବାଦ ପାଇଲେ, "ନୀଳାଚଳ ଓ ନୀଳମାଧବ ବାଲୁକାସ୍ତୂପ ଦ୍ୱାରା ଆବୃତ ହୋଇ ଯାଇଛି ।" ପରେ ନାରଦଙ୍କ ଉପଦେଶାନୁସାରେ ନୀଳକଣ୍ଠେଶ୍ୱର ମହାଦେବଙ୍କ ସାନ୍ନିଧ୍ୟରେ ଆଦିନୃସିଂହନାଥଙ୍କ ମନ୍ଦିର ସ୍ଥାପନାକରି ସହସ୍ର ଅଶ୍ୱମେଧ ଯଜ୍ଞଦ୍ୱାରା ଚକ୍ରଧରଙ୍କୁ ସନ୍ତୁଷ୍ଟ କରିଥିଲେ । ତତ୍ପରେ ଶଙ୍ଖ-ଚକ୍ର-ଗଦା-ପଦ୍ମ-ଲାଞ୍ଛିତ ମହାଦାରୁର ସନ୍ଧାନ ସାଗରତୀରରେ ପାଇ ସ୍ୱୟଂସମାଗତ ବୃଦ୍ଧ ସୂତ୍ରଧରଙ୍କୁ ଦାରୁ-ମୂର୍ତ୍ତି ନିର୍ମାଣ ପାଇଁ ଅନୁରୋଧ କଲେ । ବୃଦ୍ଧ ସୂତ୍ରଧର ଦେବ ଗୃହକୁ ପଞ୍ଚଦଶ ଦିନ ପର୍ଯ୍ୟନ୍ତ ଆବୃତ୍ତ ରଖି ତନ୍ମଧ୍ୟରେ ଶ୍ରୀମୂର୍ତ୍ତିମାନ ନିର୍ମାଣ କରିଥିଲେ । ସ୍ନାନ ପୂର୍ଣ୍ଣିମା ଦିନ ଇନ୍ଦ୍ରଦ୍ୟୁମ୍ନ ଦ୍ୱାର ଉନ୍ମୋଚନ କରି ରତ୍ନସିଂହାସନରେ ଗଦା-ମୂଷଳ-ଚକ୍ର-ପଦ୍ମପାଣି ବଳରାମ, ବରାଭୟ ପଦ୍ମପାଣି ସୁଭଦ୍ରା ଓ ସୁଦର୍ଶନ ସହିତ ଶଙ୍ଖ-ଚକ୍ର-ଗଦା-ପଦ୍ମଧାରୀ ଜଗନ୍ନାଥଦେବଙ୍କୁ ଦର୍ଶନ କରିଥିଲେ ।

ସ୍କନ୍ଦପୁରାଣର ଉତ୍କଳଖଣ୍ଡ ଓ କପିଳ ସଂହିତାର ପ୍ରଦତ୍ତ ଦାରୁବ୍ରହ୍ମଙ୍କର ପ୍ରକଟ ବିବରଣ ଏକପ୍ରକାର ମନେହୁଏ । ନୀଳାଦ୍ରି ମହୋଦୟ ୪ର୍ଥ ଖଣ୍ଡରେ ବର୍ଣ୍ଣିତ ଅଛି ଯେ ଭଗବାନ୍, ଶ୍ରୀଜଗନ୍ନାଥ, ବଳଦେବ, ଭଦ୍ରା, ସୁଦର୍ଶନ, ବିଶ୍ୱଧାତ୍ରୀ, ଲକ୍ଷ୍ମୀ ଓ ମାଧବଙ୍କ ସମ୍ବଳିତ ସପ୍ତ ସଂଖ୍ୟକ ମୂର୍ତ୍ତିରେ ରତ୍ନସିଂହାସନରେ ଆବିର୍ଭୂତ ହୋଇଥିଲେ । ଜଗନ୍ନାଥ ନୀଳଘନ ମୂର୍ତ୍ତି ପଦ୍ମାସନରେ ଉପବିଷ୍ଟ । ପଦ୍ମ ପତ୍ରପରି ତାଙ୍କର ଲୋଚନ ଦ୍ୱୟ ଆୟତ । ତାଙ୍କର ଦୁଇଟି କରକମଳ ଗୁପ୍ତ ଓ ଅନ୍ୟଦୁଇଟି ଉତ୍ତୋଳିତ । ଶୁଭାନନା ସୁଭଦ୍ରା-ଙ୍କର ଶ୍ରୀମୂର୍ତ୍ତି ପୂର୍ବ ସଦୃଶ । ତାଙ୍କର କରଦ୍ୱୟ ଅଧୋଲମ୍ବିତ ଓ ଅଦୃଶ୍ୟ, ବର୍ଣ୍ଣ କୁଙ୍କୁମାଭ । ବଳଭଦ୍ରଙ୍କର ସପ୍ତଫଣା ବେଷ୍ଟିତ ମସ୍ତକ । ବର୍ଣ୍ଣ ହେଉଛି କୁନ୍ଦେନ୍ଦୁ ଶୈର୍ଖ ଧବଳ । ଆୟତ ପଦ୍ମନେତ୍ର । ଗୁପ୍ତପାଦ । ଦୁଇଟି ହସ୍ତ ଗୁପ୍ତ ଓ ଦୁଇଟି ଉତ୍ତୋଳିତ । ସୁଦର୍ଶନ ସ୍ତମ୍ଭରୂପୀ ଜିତେନ୍ଦ୍ରିୟ । ମାଧବଙ୍କ ସ୍ୱରୂପ ହ୍ରସ୍ୱାୟତନ । ପଦ୍ମଲୋଚନା ଲକ୍ଷ୍ମୀ ଚତୁର୍ଭୁଜା, ଦୁଇଟି ହସ୍ତରେ ବର ଓ ଅଭୟ ଏବଂ ଅନ୍ୟଦୁଇ ହସ୍ତରେ ଦିବ୍ୟକମଳ ଧାରଣ କରି ପଦ୍ମାସନରେ ଉପ-ବିଷ୍ଟ ହୋଇଛନ୍ତି । ଗୋଟିଏଟି ହସ୍ତୀ ସୁବର୍ଣ୍ଣ କଳସ ଧାରଣ ପୂର୍ବକ ଅମୃତଦ୍ୱାରା ତାଙ୍କର ଅଭିଷେକ କରାଉଛନ୍ତି । ଶୁଭ୍ରମୟୀ ଦେବୀ ଜଗଦ୍ଧାତ୍ରୀ ପଦ୍ମାସନରେ ଉପବିଷ୍ଟା । ତାଙ୍କର ଡାହାଣହସ୍ତରେ ଜ୍ଞାନମୁଦ୍ରା ଓ ବାମହସ୍ତରେ ଲୀଳାକମଳ ଶୋଭାପାଉଛି । ପଞ୍ଚଦଶ ଦିବସ ପରେ ସମସ୍ତେ ଏହି ସପ୍ତସଂଖ୍ୟକ ଦାରୁମୂର୍ତ୍ତିଙ୍କ ଦର୍ଶନ ଲାଭ କଲେ; କିନ୍ତୁ ସୂତ୍ରଧର ଅନ୍ତର୍ହିତ ହୋଇ ଯାଇଥିଲେ ।

ପଦ୍ମପୁରାଣର ବିଷୟବସ୍ତୁରେ କେତେକ ପରିବର୍ତ୍ତନ ଦେଖାଯାଏ । କାଞ୍ଚିରାଜ ରତ୍ନଗ୍ରୀବ ବହୁକାଳ ରାଜ୍ୟ ଶାସନକରି ନିର୍ବେଦଗ୍ରସ୍ତ ହେଲେ । ସେ ସ୍ୱପ୍ନରେ ଜଣେ ତପସ୍ୱୀ ବ୍ରାହ୍ମଣଙ୍କର

ଦର୍ଶନ ଲାଭ କରିଥିଲେ । ପରଦିନ ରାଜସଭାରେ ତତ୍ରୂପ ତପସ୍ୱୀ ଉପସ୍ଥିତ ହୋଇ 'ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ ରାଜାଙ୍କ ସମ୍ମୁଖରେ ବର୍ଣ୍ଣନା କଲେ । "ପୁରୁଷୋତ୍ତମ କ୍ଷେତ୍ରରେ ବିଷ୍ଣୁଙ୍କ ପ୍ରସାଦରୁ ଧନୁର୍ଦ୍ଧାରୀ ଭୀଲ୍ଲମାନେ ଚତୁର୍ଭୁଜ ହୋଇଛନ୍ତି । ଏକଦା ବୃଥୁନାମକ କୌଣସି ଭୀଲ୍ଲବାଳକ ଜମ୍ବୁଫଳ ଉଦ୍ଦେଶ୍ୟରେ ବୃକ୍ଷା-ରୋହଣ କରି ଅଦୂରରେ ମଣିମୟ ସ୍ୱର୍ଣ୍ଣଖଚିତ ବିଷ୍ଣୁ ମନ୍ଦିର ଦେଖିଲେ । କୌତୂହଳ ବଶତଃ ବାଳକଟି ମନ୍ଦିରରେ ପ୍ରବେଶ କରି ଶଙ୍ଖ-ଚକ୍ର-ଗଦା-ଶାରଙ୍ଗ ପଦ୍ମଧାରୀ ବିଷ୍ଣୁଙ୍କ ଦର୍ଶନ ଲଭିକଲେ ଏବଂ ଭୂମିରେ ପଡ଼ିଥିବା ପ୍ରସାଦ କଣିକା ସେବନ କରି ଚତୁର୍ଭୁଜ ହେଲେ । ଏହି ବାଳକ ନିକଟରୁ ଏତାଦୃଶ ଆଶ୍ଚର୍ଯ୍ୟ ସମ୍ବାଦ ଶୁଣି ଅନ୍ୟାନ୍ୟ ଭୀଲ୍ଲମାନେ ମନ୍ଦିରରେ ବିଷ୍ଣୁଙ୍କୁ ଦର୍ଶନ କଲେ ଏବଂ ପ୍ରସାଦ କଣିକା ପାଇ ଚତୁର୍ଭୁଜ ହୋଇଥିଲେ । ଏହି ଭୀଲ୍ଲ ବାଳକଙ୍କ ଠାରୁ ରହସ୍ୟାବୃତ୍ତ ମନ୍ଦିରର ସନ୍ଧାନପାଇ ଭୀଲ୍ଲମାନେ ଅରଣ୍ୟ ପରିଷ୍କାର କରି ମନ୍ଦିରଟି ଆବିଷ୍କାର କରି-ଥିଲେ ।" ପଦ୍ମପୁରାଣରେ ମନ୍ଦିରଟିକୁ ଉଦ୍ଧାର କରିବାର ବିବରଣ ଦେଖାଯାଏ ।

ଇନ୍ଦ୍ରଦ୍ୟୁମ୍ନଙ୍କ ମନ୍ଦିର ନିର୍ମାଣ ବିଷୟ ଓଡ଼ିଆ ଭାଷାରେ ବହୁପ୍ରଚଳିତ 'ଦେଉଳତୋଳା' ପୁସ୍ତିକାରୁ ଜଣାଯାଏ । ସ୍ୱପ୍ନା-ଦେଶ ପାଇ ରାଜା 'ବଉଳମାଳ' ନାମକ ସ୍ଥାନରୁ ପ୍ରସ୍ତର ଆଣି ଶ୍ରୀକ୍ଷେତ୍ରର ଶଙ୍ଖନାଭି ମଣ୍ଡଳରେ ଗୋଟିଏ ମନ୍ଦିର ନିର୍ମାଣ କଲେ ଏବଂ ରାମକୃଷ୍ଣପୁର ନାମକ ଗୋଟିଏ ଗ୍ରାମ ସ୍ଥାପନକଲେ । ମନ୍ଦିରର ଉପରେ କଳସ ଓ ଚକ୍ର ସ୍ଥାପିତ ଥିଲା । ମହାରାଜା ଇନ୍ଦ୍ରଦ୍ୟୁମ୍ନ ମନ୍ଦିରର ପ୍ରତିଷ୍ଠା ପାଇଁ ବ୍ରହ୍ମାଙ୍କୁ ନିମନ୍ତ୍ରଣ କରିବାକୁ ବ୍ରହ୍ମଲୋକକୁ ଗଲେ ଏବଂ ଏଥିମଧ୍ୟରେ ବହୁ ସମୟ ଅତିବାହିତ ହୋଇଗଲା ଓ

ମନ୍ଦିରଟି ବାଲୁକା ରାଶିରେ ପୋତି ହୋଇଗଲା । ଏଥି ମଧ୍ୟରେ ସୁରଦେବ, ଗାଲ ମାଧବ ପ୍ରଭୃତି କେତେକ ରାଜା ରାଜତ୍ୱ କରି-ଥିଲେ । ଦିନେ ଗାଲ ମାଧବଙ୍କ ଅଶ୍ୱର ଖୁରା ମନ୍ଦିରର ଚୂଳରେ ବାଜିବାରୁ ଗାଲମାଧବ ବାଲି ଖୋଳି ମନ୍ଦିରକୁ ଉଦ୍ଧାର କଲେ । ଇତି ମଧ୍ୟରେ ବ୍ରହ୍ମାଙ୍କ ସହିତ ଇନ୍ଦ୍ରଦ୍ୟୁମ୍ନ ମନ୍ଦିର ପ୍ରତିଷ୍ଠା କରିବା ପାଇଁ ଫେରି ଆସିବାରୁ ଗାଲମାଧବ ଉକ୍ତ ମନ୍ଦିରକୁ ନିଜେ ନିର୍ମାଣ କରିଛନ୍ତି ବୋଲି ଦାବି କଲେ । ଉକ୍ତ ବିଷୟରେ ସାକ୍ଷ୍ୟ ନେବାପାଇଁ ପୁରାତନ କଚ୍ଛପ ଓ ଭୂଷଣ୍ଡି କାକଙ୍କୁ ଅନୁରୋଧ କରା ହୋଇଥିଲା ।

ପ୍ରବାଦଅଛି—ମନ୍ଦିରକୁ ପଥର ବୋହି ବୋହି ଲୋକମାନେ କଚ୍ଛପ ହୋଇ ଯାଇଥିଲେ ଏବଂ ତଦବଧି ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀରେ ବାସ କରୁଛନ୍ତି । ଭୂଷଣ୍ଡିକାକ କଳ୍ପବଟ ଉପରେ ଯୁଗ ଯୁଗ ଧରି ବସି ରାମନାମ ଜପ କରୁଛି । ଏମାନେ ସାକ୍ଷ୍ୟଦେଲେ, "ରାଜାଇନ୍ଦ୍ରଦ୍ୟୁମ୍ନ ଉକ୍ତ ମନ୍ଦିରକୁ ନିର୍ମାଣ କରିଥିଲେ । କାଳକ୍ରମେ ଏହା ବାଲୁକା ରାଶିରେ ପ୍ରୋଥିତ ହେବାରୁ ଗାଲମାଧବ ମନ୍ଦିର ପୁନରୁଦ୍ଧାର କରିଛନ୍ତି ।" ଗାଲମାଧବ ସତ୍ୟର ଅପଲାପ କରିଥିବାରୁ ଶ୍ରୀମନ୍ଦିରର ବହି ର୍ଦେଶରେ ବ୍ରହ୍ମାଙ୍କ ନିର୍ଦ୍ଦେଶରେ ଅବସ୍ଥାପିତ ହେଲେ ।

ଉପରୋକ୍ତ ବିବରଣୀରୁ ଜଣାଯାଏ ଯେ ଏହି ମନ୍ଦିରର ନିର୍ମାଣ ଓ ସଂସ୍କାର କାର୍ଯ୍ୟ ଭିନ୍ନ ଭିନ୍ନ ନୃପତିଙ୍କ ଦ୍ୱାରା ହୋଇଥିଲା । ମହାକବି ସାରଳାଦାସ ମଧ୍ୟ ସ୍ୱୀୟ ମହାଭାରତରେ ଜଗନ୍ନାଥଙ୍କ ଦେଉଳ ତୋଳାର ଇତିହାସ, ନୀଳମାଧବଙ୍କ ମୂର୍ତ୍ତି ରହସ୍ୟ,

ବିଶ୍ୱ ଓ ବସୁର ମିଳନ, ଶ୍ରୀ କୃଷ୍ଣଙ୍କ ମୃତ ବିଗ୍ରହ ନେଇ ଯାବା ଓ ଅର୍ଜ୍ଜୁନ ମଧ୍ୟରେ ଯୁଦ୍ଧ, ଶେଷରେ ଦୈବବାଣୀ ଓ ଦୈବବାଣୀ ଫଳରେ ଉଭୟ ନେଇ ଶ୍ରୀକୃଷ୍ଣଙ୍କ ଅର୍ଦ୍ଧ ଦଗ୍ଧ ପିଣ୍ଡକୁ ସାଗରରେ ନିକ୍ଷେପ ଇତ୍ୟାଦି ବିଷୟକୁ ଉପଜୀବ୍ୟ କରି ଗୋଟିଏ ଗୋଟିଏ ପର୍ବ ସୃଷ୍ଟି କରିଛନ୍ତି । ପୂର୍ବୋକ୍ତ ସମସ୍ତ କାହାଣୀ କିମ୍ବଦନ୍ତୀ ଓ ଇତିହାସ ଆଲୋଚନା କଲେ ଏକ ସାଧାରଣ ବୈଶିଷ୍ଟ୍ୟ ପାଠକର ଦୃଷ୍ଟି ପଥାରୁଢ଼ ହୁଏ । ସେହିଉଛି (୧)କୃଷ୍ଣଙ୍କର ଦେହାସ୍ଥି ଭାସମାନ ଦାରୁ ନେଇ ଜଗନ୍ନାଥ ଦେବଙ୍କ ପ୍ରତିମା ରଚନା (୨) ଶବର ପୂଜିତ ନୀଳମାଧବ ରୂପୀ ବିଷ୍ଣୁଙ୍କ ପରବର୍ତ୍ତୀ କାଳରେ ଜଗନ୍ନାଥ ରୂପ ଓ ନାମ ଧାରଣ (୩) ମୂର୍ତ୍ତି ନିର୍ମାଣରେ ବିଶ୍ୱକର୍ମାଙ୍କର ଭୂମିକା (୪) ଦାରୁ ବ୍ରହ୍ମର ପରିକଳ୍ପନା ଓ କୃଷ୍ଣଙ୍କର ଦେହାସ୍ଥି ବା ଦାରୁବ୍ରହ୍ମ ରୂପ ନେଇ ଜଗନ୍ନାଥ ଦେବଙ୍କ ପ୍ରତିମା ରଚନା— ଏହି ଆଖ୍ୟାନ ସାହାଯ୍ୟରେ କୃଷ୍ଣ ଓ ଜଗନ୍ନାଥଙ୍କର ମଧ୍ୟରେ ସମ୍ବନ୍ଧ ଓ ଐକ୍ୟ ଭାବ ସ୍ଥାପନର ପ୍ରଚେଷ୍ଟା ରହିଛି ।

ବେଦରେ ଯେଉଁ "ଅଦୋ ଯଦ୍ଦାରୁ ପ୍ଳବତେ" ସୂକ୍ତ ରହିଛି ଏବଂ ତଦ୍ଦ୍ୱାରା ଯେଉଁ ପରମ୍ପରା ସୃଷ୍ଟି ହୋଇଛି — ଏହି ବୈଦିକ ପରମ୍ପରା ଦୃଷ୍ଟି ଓ କଳ୍ପନାରେ ରଖି ପରବର୍ତ୍ତୀ କାଳର ପୁରାଣକାର ଓ କବିମାନେ କୃଷ୍ଣଙ୍କ ଅସ୍ଥି ବା ସ୍ୱୟଂ ନୀଳମାଧବଙ୍କ ଦାରୁ ମୂର୍ତ୍ତିରେ ଭାସି ଆସି •ବାଙ୍କି ମୁହାଣରେ •ଲାଗିଲେ ଏହିପରି ବର୍ଣ୍ଣନା କରି ସେହି ବୈଦିକ ଅବିଚ୍ଛିନ୍ନ ତଥା ଅପରିଚ୍ଛିନ୍ନ ପରମ୍ପରାକୁ ରକ୍ଷା କରିବାରେ ଯତ୍ନଶୀଳ ହୋଇଛନ୍ତି । ଶବର ପଲ୍ଲୀର ନୀଳମାଧବଙ୍କ ସହିତ କୃଷ୍ଣ ବା ଜଗନ୍ନାଥଙ୍କର ସମ୍ବନ୍ଧ ସ୍ଥାପନ ମୂଳରେ ଆର୍ଯ୍ୟ ଓ ଅନାର୍ଯ୍ୟ ଦେବତାଙ୍କ ମଧ୍ୟରେ ଧର୍ମ ତଥା ଉପାସନାର ସମନ୍ୱୟ ସଂକେତିତ ହୋଇ ଉଠିଛି । ଆର୍ଯ୍ୟ ଧାରଣାରେ ବ୍ରହ୍ମ ଅପାଣିପାଦ ହେଲେ ହେଁ ସାକାର ଦେବ

ଦେଖାମାନେ ତାହା ନୁହନ୍ତି । ବିଶ୍ୱକର୍ମାର କାହାଣୀ ଅବଲମ୍ବନରେ ଜଗନ୍ନାଥ ଦେବଙ୍କ ବିଗ୍ରହର ଅପୂର୍ଣ୍ଣତାକୁ ବ୍ୟାଖ୍ୟା କରିବାର ଚେଷ୍ଟା କରାଯାଇଛି । ଈଶ୍ୱରଙ୍କ ମୂର୍ତ୍ତି ଗଠନର କଳ୍ପନା ମନୁଷ୍ୟ ଶକ୍ତିର ବାହାରେ ତେଣୁ ବିଶ୍ୱକର୍ମାଙ୍କର ଭୂମିକା ସୃଷ୍ଟି ହୋଇଅଛି ।

ବୈଦିକଯୁଗରେ ଦାରୁ ବା ବୃକ୍ଷ ଉପାସନା ସହିତ ଦାରୁବ୍ରହ୍ମ ରୂପୀ ଜଗନ୍ନାଥଙ୍କ ଉପାସନାର ସଂପର୍କକୁ ଦୃଢ଼ୀ କରଣ କରିବାରେ ଏ ଚେଷ୍ଟା ବା କଳ୍ପନା ନିହିତ ରହିଛି । ଐତିହାସିକ ଦୃଷ୍ଟିରେ ଶ୍ରୀ ଜଗନ୍ନାଥଙ୍କର ବର୍ତ୍ତମାନ ମନ୍ଦିର ଅନନ୍ତବର୍ମନ ଚୋଡ଼ଗଂଗ-ଦେବଙ୍କ ସ୍ୱରାଜତ୍ୱର ୧୦୪୨ ଖ୍ରୀଷ୍ଟାବ୍ଦରୁ ୧୧୧୨ ଖ୍ରୀଷ୍ଟାବ୍ଦ ମଧ୍ୟରେ ନିର୍ମିତ ହୋଇଅଛି । ପୂର୍ବର ମନ୍ଦିର କାଳକ୍ରମେ ଭଗ୍ନ ଓ ଜୀର୍ଣ୍ଣଶୀର୍ଣ୍ଣ ହୋଇ ଯାଇଥିଲା । ଗଂଗବଂଶୀୟ ସମ୍ରାଟ ଚୋଡ଼ଗଂଗ ସେହି ସ୍ଥାନରେ ବର୍ତ୍ତମାନର ଏହି ଆକାଶଚୁମ୍ବୀ ବିଶାଳ ମନ୍ଦିର ନିର୍ମାଣ କରାଇଥିଲେ । ତାଙ୍କ ପରେ ଯୋଗଜନ୍ମା ଶ୍ରୀଅନଂଗ ଭୀମ ଦେବ ବହୁ ଲକ୍ଷ ସ୍ୱର୍ଣ୍ଣ ମୁଦ୍ରା ବ୍ୟୟରେ ମନ୍ଦିରର ସୁରକ୍ଷା, ସେବା ପୂଜା ଓ ନିଯୋଗ ବ୍ୟବସ୍ଥା ପ୍ରଚଳିତ କରି ସ୍ୱକୀର୍ତ୍ତିଙ୍କୁ ଅମର କରି ଯାଇଛନ୍ତି । ପ୍ରଥିତଯଶା ସୂର୍ଯ୍ୟବଂଶୀୟ ରାଜା କପିଳେନ୍ଦ୍ର ଦେବ ଓ ପୁରୁଷୋତ୍ତମ ଦେବ ନିଜର ବୀରତ୍ୱ ଦ୍ୱାରା ଅହିନ୍ଦୁ ଆକ୍ରମଣକୁ ପ୍ରତିରୋଧ କରି ଜଗନ୍ନାଥ ଧର୍ମର ମୌଳିକ ଭିତ୍ତି ଶାନ୍ତି ଓ ମୈତ୍ରୀର ବିଜୟ ବୈଜୟନ୍ତୀ ସମଗ୍ର ଭାରତବର୍ଷରେ ଉଡ଼ାଇ ପାରିଥିଲେ । ତାପରେ ଭୋଇବଂଶୀୟ ରାଜା ରାମଚନ୍ଦ୍ର ଦେବ ଶ୍ରୀ ମୂର୍ତ୍ତିଙ୍କର ବ୍ରହ୍ମକୁ ନବକଳେବରରେ ପୁନଃ ପ୍ରତିଷ୍ଠା କରାଇ ଥିଲେ । ଏଥିପାଇଁ ତାହାଙ୍କୁ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ବୋଲି ଅଭିହିତ କରାହୋଇ ଅଛି ।

# ଶ୍ରୀ ମନ୍ଦିରର ସେବାୟତ

ଶ୍ରୀମନ୍ଦିର ସେବାୟତମାନଙ୍କ ଇତିହାସ ସମ୍ବନ୍ଧରେ ସମ୍ୟକ ଆଲୋଚନା ଏଥି ପୂର୍ବରୁ ହୋଇ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେବାୟତମାନେ ଜଗନ୍ନାଥ ମନ୍ଦିରରେ କେବେ ସେବା ପୂଜାରେ ନିଯୁକ୍ତି ପାଇଲେ, ନିଯୋଗ ଗୁଡ଼ିକର ସୃଷ୍ଟି ଠିକ୍ କେବେ ହେଲା, ଶାସନୀ ବ୍ରାହ୍ମଣମାନଙ୍କ ଠାରୁ ସେମାନେ କିଭଳି ଭାବରେ ପୃଥକ ଏବଂ ଜଗନ୍ନାଥ ଧର୍ମ ପ୍ରଚାରରେ ସେମାନେ ଯୁଗ ଯୁଗ ଧରି କପରି ପ୍ରଚେଷ୍ଟା ଚଳାଇ ଆସିଛନ୍ତି ଏ ସବୁର ଅନୁଶୀଳନ ଓଡ଼ିଶାର ଗବେଷକମାନେ ଏପର୍ଯ୍ୟନ୍ତ ବିଧିବଦ୍ଧ ଭାବରେ ଆଲୋଚନା କରିପାରି ନାହାନ୍ତି । ଜଗନ୍ନାଥ ଧାମ ଚାରିଧାମରୁ ଗୋଟିଏ ଧାମର ସାଂସ୍କୃତିକ ପୀଠ । ତୀର୍ଥରାଜ ଶ୍ରୀକ୍ଷେତ୍ରସ୍ଥ ଜଗତବନ୍ଦିତ ଜଗନ୍ନାଥ ମନ୍ଦିରରେ ଯେଉଁ ସଂଖ୍ୟା ଲଘୁଗୋଷ୍ଠୀ ନିଜର ପ୍ରତିପତ୍ତି ପ୍ରାଚୀନ କାଳରୁ ବଜାୟ ରଖି ଆସିଛନ୍ତି ତାହାର ଯୁକ୍ତିସିଦ୍ଧତା ସୁସ୍ପଷ୍ଟ । ଯେଉଁ ଐତିହାସିକ ସଂପ୍ରଦାୟ ମହାପ୍ରସାଦ, ମହାବାହୁ, ମହୋଦଧି, ମହାନଦୀ, ମହାଦୀପ, ମହାପ୍ରଭୁଙ୍କର ଧାର୍ମିକତତ୍ତ୍ୱ ସାରାବିଶ୍ୱ ଜଗତରେ ପ୍ରଚାରିତ କରିଛନ୍ତି ସେ ସଂପ୍ରଦାୟ ସ୍ମରଣୀୟ ଓ ଅଭିନନ୍ଦନୀୟ ।

ଶ୍ରୀ ମନ୍ଦିରର ସେବାୟତ ତଥା ପୂଜାପଣ୍ଡା ସାରାଭାରତର ଅଧିବାସୀମାନଙ୍କୁ ଆଶୀର୍ବାଦ କରେ ଏବଂ ପାଶ୍ଚାତ୍ୟ ଦେଶରେ ଥିବା ଗୀର୍ଜାମାନଙ୍କରେ ସମ୍ମାନିତ ହେଉଥିବା ଧର୍ମଯାଜକର ଭୂମିକା ଗ୍ରହଣ କରୁଥିଲେହେଁ ବିଦେଶାଗତ ଯାତ୍ରୀମାନେ ଏମାନଙ୍କୁ ସାକ୍ଷାତ ଦେବତା ବୋଲି ଜ୍ଞାନକରନ୍ତି । ଏପରିକି ଏମାନଙ୍କ ସହିତ ଏକାମ୍ଭୂଭାବ ସୃଷ୍ଟିକରି ଏମାନଙ୍କୁ ବିଶେଷ ସମ୍ମାନ ପ୍ରଦର୍ଶନ

କରଥାନ୍ତି । ଏମାନଙ୍କର ଅମାୟିକ ବ୍ୟବହାର, ପାଣ୍ଡିତ୍ୟ, ସେବା ମନୋଭାବ ଓ ନୈଷ୍ଠିକତା ଦେଖି ଯାତ୍ରୀମାନେ ନାନା ଭାବରେ ଏମାନଙ୍କୁ ସାହାଯ୍ୟ କରଥାନ୍ତି ।

ଶ୍ରୀ ମନ୍ଦିରର ସେବାୟତମାନଙ୍କ ମଧ୍ୟରୁ ଅନେକେ ଶ୍ରୋତ୍ରୀୟ ବୈଷ୍ଣବବ୍ରାହ୍ମଣ । କାହାରି ମତରେ ଏମାନେ ପ୍ରାଚୀନ ଉତ୍କଳର ଆଦି ବ୍ରାହ୍ମଣ । ମିଶରରୁ ମିଶ୍ର ବ୍ରାହ୍ମଣ ଏବଂ ଦଶାଶ୍ୱମେଧ ଘାଟ ପ୍ରତିଷ୍ଠା ସମୟରେ ଭାରତର ବିଭିନ୍ନସ୍ଥାନରୁ ଆସିଥିବା କୁଳୀନ ବ୍ରାହ୍ମଣ ଏକଦା ଯାଜ୍ଞୀକର ଦେଉଥିବାର ପ୍ରମାଣ ସିଟନ୍, ଲେସି, ଓ ଗ୍ରୁମ୍ ସାହେବଙ୍କ ରିପୋର୍ଟରୁ ମିଳିପାରିବ । ଉତ୍କଳଖଣ୍ଡରୁ ଜଣାଯାଏ ଯେ ଉତ୍କଳରେ ଅତି ଉଚ୍ଚ କୋଟୀର ସମ୍ଭ୍ରାନ୍ତ ବ୍ରାହ୍ମଣ ଥିଲେ । ତେଣୁ ଶ୍ରୀମନ୍ଦିରର ବିଭିନ୍ନ ସେବା ପୂଜାରେ ସମ୍ଭବତଃ ସେହିମାନଙ୍କୁହିଁ ନିୟୋଜିତ କରାଯାଇଥିବ ।

ବ୍ରହ୍ମ ଆରାଧନା ଯଦି ବ୍ରାହ୍ମଣର ପ୍ରକୃଷ୍ଟ କର୍ତ୍ତବ୍ୟ ତେବେ ଜଗନ୍ନାଥରୂପୀ ପରମବ୍ରହ୍ମଙ୍କ ବା ଜଗନ୍ନାଥଙ୍କ ମୂର୍ତ୍ତିରେ ଥିବା ବ୍ରହ୍ମ ପଦାର୍ଥର ଅର୍ଚ୍ଚନା, ଉପାସନା, ସେବା ପୂଜାରେ ଯେଉଁ ସଂପ୍ରଦାୟର ବ୍ୟକ୍ତିମାନେ ନିଜର ଜୀବନୋତ୍ସର୍ଗ କରିଛନ୍ତି ସେମାନେ ପୂର୍ବଜନ୍ମ ତପସ୍ୟାର ଫଳ ପାଇଛନ୍ତି ବୋଲି କହିବାକୁ ପଡ଼ିବ ।

ସତ୍ୟଯୁଗର ତପୀ, ଦ୍ୱାପର ଯୁଗର ଶ୍ରୀକୃଷ୍ଣଙ୍କ ସାଥିରେ ଗୋପୀ, ତ୍ରେତୟା ଯୁଗର ଶ୍ରୀରାମଙ୍କ ସୈନ୍ୟ କପି ଏବଂ କଳିଯୁଗରେ ଶ୍ରୀଜଗନ୍ନାଥଙ୍କର ସାନ୍ନିଧ ପାଇବା କମ୍ ଗର୍ବ ଓ ଗୌରବର କଥା ନୁହେଁ । ଯେଉଁ ପୂଜକର ଭୂମିକାରେ ଅନ୍ନ, ମହାପ୍ରସାଦର ଖ୍ୟାତି ଅର୍ଜନ କରେ ସେ କେତେ କୁଳୀନ ? ଯେଉଁ ଜାତି

ଜଗନ୍ନାଥଙ୍କୁ ଶତ୍ରୁ କବଳରୁ ବହୁବାର ବଂଚାଇ ଓଡ଼ିଶାର ସମ୍ମାନ ବଜାୟ ରଖିଛନ୍ତି ସେ ଜାତି କେତେ ମହତ୍ । ଶ୍ରୀଜଗନ୍ନାଥଙ୍କର ଶ୍ରୀଅଙ୍ଗ ଲାଗି ଫୁଲମାଳ, ମାଳଚନ୍ଦନର ନେତ, ରଥ ଓ ସ୍ନାନ ପୂର୍ଣ୍ଣିମାରେ ପଡ଼ନ୍ତି ବଳେ ସମୟରେ ଦେବଙ୍କର ଅଙ୍ଗରୁ ଆଣିଥିବା ପଟି ଏବଂ କୈବଲ୍ୟ କଣିକା ପ୍ରଭୃତି ସାରା ଭାରତରେ ଯେଉଁମାନେ ବଣ୍ଟନ କରି ଜଗନ୍ନାଥ ଧର୍ମ, ପୀଠସ୍ଥ ଦେବତା ଓ କ୍ଷେତ୍ର ମାହାତ୍ମ୍ୟର ପ୍ରଚାର କରନ୍ତି ସେମାନେ ବାସ୍ତବିକ ପ୍ରଶଂସାର୍ହ ।

ଶ୍ରୀମନ୍ଦିରର ସେବାୟତମାନେ ବିଭିନ୍ନ ପ୍ରଦେଶ ପରିଭ୍ରମଣ କରି ସେ ପ୍ରଦେଶର ଭାଷା ସାହିତ୍ୟ ସହିତ କେବଳ ଯେ ପରିଚିତ ହୁଅନ୍ତି ତାହା ନୁହେଁ ନିଖିଳ ଭାରତରେ ଓଡ଼ିଶା ସହିତ ଏକ ସାଂସ୍କୃତିକ ଯୋଗସୂତ୍ର ସେମାନେହିଁ ସୃଷ୍ଟି କରିଥାନ୍ତି, ତଦ୍ୱାରା ସାମ୍ୟ ମୈତ୍ରୀ ଓ ଭାତୃଭାବର ମହତ୍ ଆଦର୍ଶ ଏ କ୍ଷେତ୍ରରେ ସୁରକ୍ଷିତ ହୋଇ ଆସୁଅଛି ଯାହା ଫଳରେ ଏମାନେ ସର୍ବତ୍ର ସାଧୁ ସନ୍ନ୍ୟାସୀ, ମହନ୍ତ, ପଣ୍ଡିତ, ବିଦ୍ୱାନ, ଧନିକ, ସୌଦାଗର, ରାଜା, ରାଣୀ ସମସ୍ତଙ୍କ ଠାରୁ ସମ୍ମାନ ପାଇଥାନ୍ତି ।

ପଣ୍ଡା ପଣ୍ଡିତ ଶବ୍ଦର ଅପଭ୍ରଂଶ ହେଲେ ଶ୍ରୀମନ୍ଦିରର ସେବାୟତମାନେ କେବଳ ଯେ ଶାସ୍ତ୍ର ବିଶାରଦ ତା ନୁହେଁ ବରଂ ଏମାନେ ତୀର୍ଥଗୁରୁ ଉପଦେଷ୍ଟା ଓ ମୁଖ୍ୟ ପୁରୋଧା ଭାବରେ ପରିଗଣିତ ।

ଆସାମର ପଞ୍ଚାୟତରେ ମୁଖ୍ୟ ଭାବରେ, ନେପାଳ ରାଜାଙ୍କ ଉପଦେଷ୍ଟା ଭାବରେ ଝାନ୍ସିରାଣୀର ତୀର୍ଥଗୁରୁ ଭାବରେ,ଶ୍ରୀଜଗନ୍ନାଥ ମନ୍ଦିରର ସେବାୟତମାନେ ଯେଉଁ ଖ୍ୟାତିଲାଭ କରିଛନ୍ତି ତାହା ତାଙ୍କର ଯୁଗ ଯୁଗ ପରିଶ୍ରମର ଶ୍ରେଷ୍ଠ କୃତିତ୍ୱରେ ସ୍ୱ କର୍ତ୍ତବ୍ୟ ସଂପାଦନକୁ ଜୀବନର ସର୍ବସ୍ୱ ଜ୍ଞାନକରି ଯେଉଁ ଗରିବ ସେବାୟତ

ଆଜି ବି ସାମାନ୍ୟ କେତେ ପଇସାର ଖଇ ଗ୍ରହଣ କରେ ଏବଂ ସେ ନିଜର ସେବା କାର୍ଯ୍ୟକର ପରମସନ୍ତୋଷ ଲାଭ କରିଥାଏ । ଆଧ୍ୟାତ୍ମିକ ପବିତ୍ର ପରିବେଶରେ ସେ ବଙ୍ଗାଳୀ,ମରହଟ୍ଟୀ, ତେଲଙ୍ଗା ତାମିଲ, ଗୁଜୁରାଟୀ, କର୍ଣ୍ଣାଟୀ ଯେ କେହି ତୀର୍ଥ ଯାତ୍ରୀଙ୍କୁ ହୃଦୟର ସହିତ ଆଦର କରେ ଏମାନଙ୍କୁ ଆଶୀର୍ବାଦ ପ୍ରଦାନ କରିବା ଛଳରେ ସେ ଯେପରି ଏ କ୍ଷେତ୍ରସ୍ଥ ତୀର୍ଥରେଣୁର ପବିତ୍ରତା ଚତୁର୍ଦ୍ଦିଗରେ ଘୋଷଣା କରେ । ପୁରୀପଣ୍ଡାଙ୍କୁ ଯାତ୍ରୀମାନେ ନମସ୍କାର କରିବା ଅର୍ଥ ଓଡ଼ିଶାର ଶିଳ୍ପ ପରିକଳ୍ପନା ଆଗରେ ନତମସ୍ତକ ହେବା ଏବଂ ଶ୍ରୀମନ୍ଦିର ଭଳି ଏକ ବିଶ୍ୱବିଖ୍ୟାତ କୀର୍ତ୍ତିକୁ ଦର୍ଶନ କରି ଅଭିଭୂତ ହେବା ।

ଖାଲି ଏତିକି ନୁହେଁ ଶ୍ରୀମନ୍ଦିରର ସେବାୟତମାନଙ୍କ ମଧ୍ୟରେ ଯେଉଁ ସଂସ୍କୃତି ବଂଶ ରହିଛି ତାର ପଟାନ୍ତର ନାହିଁ । ପୁରୀର ନେତ, ନାଗା, ନାଗପୂଜା, ସାହିଯାତ ଏହି ସଂସ୍କୃତିର କେତୋଟି ଦିନମାନ ଓଡ଼ିଶୀ ସଂଗୀତ ଓଡ଼ିଶୀ ନୃତ୍ୟ ଯାଗା-ଆଖଡାରେ ବ୍ୟାୟାମ୍ ଖେଳକସରତ ପ୍ରଭୃତି ଏମାନେହିଁ ବଞ୍ଚାଇ ରଖିଛନ୍ତି । ଏମାନେ ପ୍ରତ୍ୟେକ ଭାରତର ପ୍ରସିଦ୍ଧ ୫ଟି ଭାଷାରେ କଥାବାର୍ତ୍ତା କରିପାରନ୍ତି । ଧନୀ,ମାନୀ, ଜ୍ଞାନୀ, ଦାନୀ,ଲେଖକ ବ୍ୟବସ୍ଥାପକ ସଂଗୀତଜ୍ଞ ଶିକ୍ଷକ ନେତା ସାମ୍ବାଦିକ ନାଟ୍ୟକାର ଅଭିନେତା ପଣ୍ଡିତ କବି ସକଳପ୍ରକାର ବ୍ୟକ୍ତିଙ୍କୁ ନେଇ ସଂପ୍ରଦାୟ ଗର୍ବ କରିଆସୁଛି ସିପାହୀ ବିଦ୍ରୋହର ଅନ୍ୟତମ ବିପ୍ଳବୀ ନେତା ଚନ୍ଦନହଜୁରୀ, ସାରା ଓଡ଼ିଶାରେ ଦାନୀରୂପେ ପରିଚିତ ହୋଇଥିବା "ବଡ଼େ ହରିହର" ଏ ସଂପ୍ରଦାୟର ବ୍ୟକ୍ତି । ଏମାନଙ୍କ ଲହୁ ଲୁହରେ ବହୁ ଯତ୍ନରେ ଶ୍ରୀମନ୍ଦିର ଭଳି ଏକ ବିଶାଳବିଶିଷ୍ଟ କୀର୍ତ୍ତି

ତଡ଼ି ରହିଆସିଛି ଏବଂ ଏହିମାନଙ୍କର ପ୍ରଚେଷ୍ଟାରେ ଜଗନ୍ନାଥ ଜଗତର ନାଥ ହୋଇ ପାରିଛନ୍ତି । କଳାପାହାଡ଼ ପରି କୁଚକ୍ରୀର ଷଡ଼ଯନ୍ତ୍ରରୁ ଜଗନ୍ନାଥଙ୍କୁ ରକ୍ଷା କରିବାର ଦାୟିତ୍ୱହିଁ ଏମାନେ ନେଇଥିଲେ । ଏହି ସଂପ୍ରଦାୟ ଜଗନ୍ନାଥ ସଂସ୍କୃତିର ପ୍ରଚାରକ, ପ୍ରସାରକ ଓ ସଂରକ୍ଷକ ।

## ଶ୍ରୀ କ୍ଷେତ୍ରରେ ଶବର ପ୍ରଭାବ

ଜଗନ୍ନାଥଙ୍କ ମନ୍ଦିରରେ ଶବର ପ୍ରଭାବ ସୁସ୍ପଷ୍ଟ । ମୁଖ୍ୟ ସେବକ ଦଇତାପତି ଶବରବଂଶୋଦ୍ଭବ ଓ ଏମାନେ ଶ୍ରୀବିଗ୍ରହ ମାନଙ୍କର ପ୍ରତ୍ୟକ୍ଷ ସେବାରେ ନବକଳେବର ଓ ରଥଯାତ୍ରା ସମୟରେ ନିୟୋଜିତ ରହିଥାନ୍ତି । ଦଇତାପତିମାନଙ୍କର ସେବାପ୍ରଣାଳୀ ଅନୁଧ୍ୟାନ କଲେ ଶାବରପ୍ରଭାବର ଗୁରୁତ୍ୱ ଜଣାଯାଏ ଏମାନେ ପୁଣି ସ୍ୱୟଂ ଜଗନ୍ନାଥଙ୍କର ସକୁଟୁମ୍ବୀ । ନବକଳେବର ପରେ ପୁରାତନ କଳେବରକୁ ସମାଧିଦେବାଠାରୁ ଅନ୍ତ୍ୟେଷ୍ଟିକ୍ରିୟା ପର୍ଯ୍ୟନ୍ତ ତେରଦିନ ଧରି ଏମାନେ ଅଶୌଚ ପାଳନ କରନ୍ତି । ଏହି ପ୍ରଥା ମୂଳରେ କିପ୍ରକାର ଗୂଢ଼ତତ୍ତ୍ୱ ରହିଛି ତାହାର ବିବରଣୀ ଜଣାପଡ଼ି ନାହିଁ । କିନ୍ତୁ ଜନଶ୍ରୁତିରେ ବହୁ ପ୍ରଚଳିତ କିମ୍ବଦନ୍ତୀ ନିମ୍ନରେ ପ୍ରଦତ୍ତ ହେଲା ।

ଦ୍ୱାପର ଯୁଗରେ ଯୁଗାବତାର ପୁରୁଷୋତ୍ତମ ଶ୍ରୀକୃଷ୍ଣ ଯଦୁବଂଶରେ ଜନ୍ମଗ୍ରହଣ କରିଥିଲେ ଏହି ଯଦୁବଂଶର ଅନ୍ୟନାମ ସାତ୍ତ୍ୱତବଂଶ । ଶ୍ରୀକୃଷ୍ଣଙ୍କର ଜନକ ବସୁଦେବ ଓ ବସୁଶବର ଏକବଂଶୀୟ ବୋଲି ଜଣାଯାଇଥିଲେ । ତେଣୁ ବସୁଶବର ମଧ୍ୟ ସାତ୍ତ୍ୱତ-ବଂଶୀୟ । ଶ୍ରୀକୃଷ୍ଣଙ୍କର ମହାପ୍ରୟାଣ ପରେ ତାଙ୍କର ଶବସତ୍କାର

କରିବାପାଇଁ ପାଣ୍ଡବ ଓ ଶବରମାନଙ୍କ ମଧ୍ୟରେ ଯେଉଁ ବିବାଦ ଉପୁଜିଥିଲା, ଏ ବିବାଦକୁ ଏଡ଼ିବା ପାଇଁ ମଧ୍ୟମପାଣ୍ଡବ ଅର୍ଜୁନ ଶ୍ରୀକୃଷ୍ଣଙ୍କ ମୃତ ଶରୀରକୁ ଦ୍ୱାରକାରୁ ବହୁଦୂରବର୍ତ୍ତୀ ସମୁଦ୍ର ଉପକୂଳକୁ ନେଇ ଆସିଥିଲେ ଓ ସତ୍କାର କରିଥିଲେ । ଏହି ସ୍ଥାନଟି ସମ୍ଭବତଃ ଶ୍ରୀକ୍ଷେତ୍ରର କୈବଲ୍ୟ ବୈକୁଣ୍ଠ ବା କୋଇଲି ବୈକୁଣ୍ଠ । ଏଠାରେ ମଧ୍ୟ ଶବରମାନେ ଆସି ଉପସ୍ଥିତ ହୋଇ-ଥିଲେ । କଥିତଅଛି ଶ୍ରୀକୃଷ୍ଣଙ୍କର ମରଶରୀରଟି ସତ୍କାର ହୋଇ ନପାରିବାରୁ ଅର୍ଜୁନ ଚିନ୍ତିତ ହେଲେ । ଏହି ସମୟରେ ଆକାଶବାଣୀ ହେଲା, "ଭଗବାନ ଶ୍ରୀକୃଷ୍ଣଙ୍କ ଶରୀରକୁ ଅଗ୍ନି ଦଗ୍ଧ କରିବାକୁ ଅକ୍ଷମ । ସେହି ଶରୀରକୁ ସମୁଦ୍ରରେ ଭସାଇ ଦିଅ । ଅର୍ଜୁନ ତାହାକୁ ସମୁଦ୍ରରେ ଭସାଇ ଦେଇଥିଲେ । ଶବର-ମାନେ ସଂସ୍କାର ସ୍ଥଳରେ ଶ୍ରୀକୃଷ୍ଣଙ୍କର ପରିହିତ ଇନ୍ଦ୍ରନୀଳମଣିଟି ପାଇଥିଲେ ଏବଂ ନିଜବଂଶର ମହାପୁରୁଷଙ୍କ ଶେଷ ସମ୍ମାନର ସଂକେତ ରୂପେ ତାହାକୁ ପୂଜାକଲେ । ଏହି ଇନ୍ଦ୍ରନୀଳମଣିରେ ଶବରମାନେ ସମ୍ଭବତଃ ଶ୍ରୀକୃଷ୍ଣଙ୍କର ବିଗ୍ରହ ନିର୍ମାଣ କରିଥିଲେ ଓ ସେହି ବିଗ୍ରହ ନୀଳମାଧବରୂପେ ପୂଜିତ ହେଲେ । ଏଣେ ଶ୍ରୀକୃଷ୍ଣଙ୍କର ମରଶରୀର ଅବୟବ ବିହୀନହୋଇ ଦାରୁବତ୍ ଜଳରେ ଭାସିବାକୁ ଲାଗିଲା । ଶୋକବିହ୍ୱଳ ଜରାଶବର ସେହି ଶରୀରର ଅନ୍ୱେଷଣରେ ବୁଲି ବୁଲି ତାହାକୁ ପାଇଥିଲା ଓ ଗୋପନରେ ପୂଜାକଲା । ତାର ପୁନି ବିଶ୍ୱାବସୁମଧ୍ୟ ଏହି ଶରୀରକୁ ବହୁଦିନ ପୂଜା କରିଥିଲା । ଇନ୍ଦ୍ରଦ୍ୟୁମ୍ନ ଯେଉଁ ଦାରୁବ୍ରହ୍ମଙ୍କ ସ୍ୱପ୍ନ ଦେଖିଥିଲେ, ଏହି ଦାରୁବ୍ରହ୍ମ ହେଉଛି ଶ୍ରୀକୃଷ୍ଣଙ୍କ ଶରୀର । ପରେ ବିଶ୍ୱକର୍ମାଙ୍କ ଦ୍ୱାରା ଏହି ଦାରୁକୁ ଶ୍ରୀମୂର୍ତ୍ତିରେ ପରିଣତ କରାଗଲା ଓ ପୂଜା କରାଗଲା । ନବକଳେ-ବରରେ ଶ୍ରୀମୂର୍ତ୍ତିର ଅଭ୍ୟନ୍ତରରେ ଯେଉଁ ବ୍ରହ୍ମସ୍ଥାପନର ବିଧିଅଛି;

ସେଥିରେ ସମ୍ଭବତଃ ଶବର ପୂଜିତ ସେହି ଇନ୍ଦ୍ରନୀଳମଣି ସ୍ଥାନପାଇଛି । ଜଗନ୍ନାଥଙ୍କୁ ଶ୍ରୀକୃଷ୍ଣଙ୍କର ଅବଶେଷ ରୂପେ ହିନ୍ଦୁମାନେ ବିଶ୍ୱାସ କରନ୍ତି । ଶ୍ରୀକୃଷ୍ଣଙ୍କର ମରଶରୀର ଉପରେ ଯେଉଁ ସଗୋତ୍ରୀୟ ଶବରମାନେ ଦାବିକରିଥିଲେ ସେମାନେ ପ୍ରଭାସ ଉପକୂଳରୁ ବିନ୍ଧ୍ୟାଞ୍ଚଳ ଦେଇ ମହୋଦଧି ପର୍ଯ୍ୟନ୍ତ ବିସ୍ତାରିତ ଥିଲେ । ସେମାନେ ଥିଲେ ଶ୍ରୀକୃଷ୍ଣଙ୍କର ସକୁଟୁମ୍ବୀ ସାତ୍ତ୍ୱତବଂଶୀୟ । ବିଶ୍ୱାବସୁ ନାମକ ଯେଉଁ ଶବର ନୀଳମାଧବଙ୍କୁ ପୂଜା କରୁଥିଲା ସେ ମଧ୍ୟ ସେହି ବଂଶର । ତେଣୁ ବିଶ୍ୱାବସୁ ବଂଶୀୟ ଦଇତାପତି-ମାନେ ଆଜିମଧ୍ୟ ଜଗନ୍ନାଥଙ୍କ ନବକଳେବର ପରେ ପୁରାତନ କଳେବରକୁ ସତ୍କାରକରି ସକୁଟୁମ୍ବପରି ଶୌଚବିଧି ପାଳନ କରନ୍ତି । ଅତୀତର ସେହି ସ୍ମୃତି ଆଜି ପରମ୍ପରାରେ ରହିଯାଇଛି ।

ସେହି ଯେଉଁ କଙ୍କାଳ ରଜନୀରେ ଶ୍ରୀକୃଷ୍ଣଙ୍କ ପଦ୍ମପାଦକୁ ମୃଗର କର୍ଣ୍ଣଭାବି ଜରାଶବର ଶସ୍ତ୍ରାଘାତ କରିଥିଲା, ସମ୍ଭବତଃ ସେ ଦିନଟିଥିଲା ମଳମ୍ଳୁଚ ଆଷାଢ଼ର କୃଷ୍ଣଚତୁର୍ଦ୍ଦଶୀ । ବିଦ୍ୟୁତ ଝଲକରେ ଶିଆଳି ଲତାରେ ଆବୃତଥିବା ରଙ୍ଗାଚରଣ ଉତ୍କୀର୍ଣ୍ଣ ମୃଗକର୍ଣ୍ଣର ଭ୍ରମ ଆଣିଥିଲା । ସେହି ସ୍ମୃତିର ଆଧାରରେ ମଳମ୍ଳୁଚ ଆଷାଢ଼ର କୃଷ୍ଣଚତୁର୍ଦ୍ଦଶୀ ନିଶୀଥରେ ଆଜିମଧ୍ୟ ନବକଳେବର ହୁଏ । କଥିତ ଅଛି—ଶ୍ରୀକୃଷ୍ଣଙ୍କ ମହାପ୍ରୟାଣ ସମୟରେ ସବୁନି ଅପଶକୁନ ଦେଖାଦେଇଥିଲା ଏବଂ ଜନସାଧାରଣ ଭୀତତ୍ରସ୍ତ ହୋଇଥିଲେ । ଯୁଗପୁରୁଷ ଶ୍ରୀକୃଷ୍ଣଙ୍କର ଦେହାନ୍ତରେ ଦ୍ୱାପରଯୁଗର ଅବସାନ ହୋଇଥିଲା । ଆଜିମଧ୍ୟ ନବକଳେବର ସମୟରେ ବହୁଭୀତିପ୍ରଦ ଅପଶକୁନ ଦେଖାଯାଏ ବୋଲି ପ୍ରବାଦଅଛି । ଦଇତାପତିମାନଙ୍କର ଜଗନ୍ନାଥଙ୍କ ସହିତ ଏହି ସମ୍ବନ୍ଧ ଇତିହାସ ସମର୍ଥିତ ନହେଲେ ମଧ୍ୟ, କିମ୍ବଦନ୍ତୀରେ ରହିଆସିଛି ।

ପୂର୍ବରୁ ଜଣାଯାଇଛି ଯେ ଶ୍ରୀମନ୍ଦିର ଆର୍ଯ୍ୟ ଓ ଆର୍ଯ୍ୟେତର ମାନଙ୍କର ମିଳନସ୍ଥଳୀ । ଏହି କ୍ଷେତ୍ରରେ ଆର୍ଯ୍ୟମାନଙ୍କର ସମ୍ଭ୍ରାନ୍ତ ସ୍ୱାଭିମାନ ବା ଆର୍ଯ୍ୟେତରମାନଙ୍କର ଆତ୍ମଗ୍ଲାନି ନାହିଁ । ଶ୍ରୀକ୍ଷେତ୍ର ସାମ୍ୟ, ମୈତ୍ରୀ ଓ ପ୍ରଗତିର ସ୍ମାରକପୀଠ । ବିଭିନ୍ନ ସଂପ୍ରଦାୟ ଜଗନ୍ନାଥ ଧର୍ମରେ ସମନ୍ୱିତ ହୋଇଛନ୍ତି । ଜାତି ଓ ବର୍ଣ୍ଣର ବିଚାର ଏଠାରେ ନାହିଁ । ଶ୍ରୀକ୍ଷେତ୍ରର ମହାପ୍ରସାଦ ଆଚଣ୍ଡାଳବ୍ରାହ୍ମଣ ସମସ୍ତେ ଏକାଠି ସେବନ କରନ୍ତି ।

ଜଗନ୍ନାଥଙ୍କର ପୂଜା ଚଳଣିରେ ଶବରମାନଙ୍କର ସ୍ୱତନ୍ତ୍ର ଭୂମିକା ରହିଛି । ସ୍ନାନପୂର୍ଣ୍ଣିମା ପରଠାରୁ ଶ୍ରୀବିଗ୍ରହମାନେ ଅନବସର (ଅଣସର) ଗୃହରେ ଦୁଇସପ୍ତାହ କାଳ ପୂଜା ପାଇଥାନ୍ତି । ଏ ସମୟରେ ବ୍ରାହ୍ମଣମାନେ ପୂଜାକରନ୍ତି ନାହିଁ । ପୂଜାକରନ୍ତି ଏହି ଶବରବଂଶୋଦ୍ଭବ ଦଇତାମାନେ । ଏହି ପୂଜାରେ ଅବସର ନଥାଏ । ତେଣୁ ଏହାକୁ ଅନବସର କହନ୍ତି । ଶ୍ରୀବିଗ୍ରହଙ୍କ ଦେହରେ ତିଳ ତୈଳ, ଚୂଆ ଓ ଆବରଣ ପାଇଁ ଅଙ୍ଗରାଗ ପ୍ରଭୃତି ବୋଳି ଫଳମୂଳ ସମର୍ପଣ କରନ୍ତି । ଏଥିରେ ବୈଦିକ ଉପଚାର ନଥାଏ । ଏକ ଆସନରେ ବସି ଫଳମୂଳ ଦେବତାମାନଙ୍କୁ ସମର୍ପଣ କରନ୍ତି ଓ ନିଜେ ଖାଆନ୍ତି । ଏପରିକି ସ୍ୱାଦୁଫଳ ନିଜେ ଚାଖି ବିଗ୍ରହମାନଙ୍କୁ ଖୁଆଇ ନେବାର "ସଙ୍କର୍ପଣ କ୍ରିୟା" ମଧ୍ୟ ପ୍ରଚଳିତ । ଏଠାରେ ଭକ୍ତି ସମ୍ଭ୍ରମପୂର୍ଣ୍ଣ ନୁହେଁ ; ପରନ୍ତୁ ଏହା ଆତ୍ମୀୟ ପ୍ରୀତି । ଜଗନ୍ନାଥଙ୍କୁ ସେମାନେ ନିଜର ପରିବାରର ବ୍ୟକ୍ତି ବୋଲି ଭାବନ୍ତି । ଶାବରବିଧିରେ ନାନାପ୍ରକାର ଅସ୍ପଷ୍ଟ ମନ୍ତ୍ର ଉଚ୍ଚାରଣ କରି ପ୍ରତ୍ୟେକ-ବସ୍ତୁ ଦେବତାଙ୍କ ଉଦ୍ଦେଶ୍ୟରେ ସମର୍ପଣ କରନ୍ତି । ଏହି ଶାବର ବିଧିକୁ ଲକ୍ଷ୍ୟକଲେ ତ୍ରେତାୟୁଗର ଶବରୀ ରାମ ଲକ୍ଷ୍ମଣଙ୍କୁ ଉଚ୍ଛିଷ୍ଟ ଫଳମୂଳ ଭୁଂଜାଇ ଦେବାର ସ୍ମୃତି ମନକୁ ଆସେ । ଅତି ସରଳ

ଭାବରେ "କେଉଁ ଫଳଟି ମଧୁର" ଜାଣି ଶବରୀ ରାମଚନ୍ଦ୍ରଙ୍କୁ ସମର୍ପଣ କରିଥିଲା । ଏହି ସମ୍ବନ୍ଧରେ ଦଇତାମାନେ ଶ୍ରୀବିଗ୍ରହମାନଙ୍କୁ ବିଭିନ୍ନ ଅଙ୍ଗରାଗରେ ସଜାଉଥାନ୍ତି । ଅନବସରରେ ସେମାନଙ୍କର ସମର୍ପଣ ଉପାସନା ମୂଳରେ ବାତ୍ସଲ୍ୟ ରହିଛି । ଶିଶୁକୁ ପିତାମାତା ଯେପରି ଅତି ଆଦରରେ ଖୁଆଇ ଦିଅନ୍ତି ସଜ କରିଦିଅନ୍ତି । ଦଇତାମାନେ ଠିକ୍ ସେପରି ବିଧି ଆଚରଣ କରିଥାନ୍ତି । ଏହାକୁ ସାଧାରଣତଃ ଗୁପ୍ତପୂଜା କୁହାଯାଏ ।

ଘୋଷଯାତ୍ରା ବା ରଥଯାତ୍ରାରେ ମଧ୍ୟ ଶବର ପ୍ରଭାବ ପରି-ଲକ୍ଷିତ । ଶ୍ରୀବିଗ୍ରହମାନେ ରଥରେ ଯାତ୍ରା କଲାବେଳେ ଫଳମୂଳାଦି ସେମାନଙ୍କୁ ଅର୍ପଣ କରାଯାଏ । ରଥରେ ବୈଦିକ ଉପଚାରରେ ପୂଜା ହୁଏ ନାହିଁ । ରଥଯାତ୍ରା ପୂର୍ବରୁ ଶ୍ରୀମୂର୍ତ୍ତିମାନଙ୍କୁ ଶବର ବେଶରେ ଭୂଷିତ କରାହୁଏ, ସେମାନଙ୍କର ହୃଦୟ ଦେଶରେ ଶବରଙ୍କ ପରିଧାନ 'ପେଟି' ପିନ୍ଧାଇ ଦିଆଯାଏ । ପହଣ୍ଡି ବା ପାଦହଣ୍ଡିନ ସମୟରେ ଦଇତାମାନେ ନିଜ କଟିରେ ଏହି ପେଟିବସ୍ତ୍ର ବାନ୍ଧି ମାଳଶ୍ରୀ ନାମକ ପଦାବଳୀ ଆବୃତ୍ତି କରନ୍ତି । ରଥକୁ ବିଗ୍ରହମାନଙ୍କର ଯାତ୍ରା ଈଶାନକୋଣଦେଇ ହୁଏ । ଆର୍ଯ୍ୟମାନଙ୍କର ପୂର୍ବ ଦିଗକୁ ମୁଖକରି ଯାତ୍ରା କରିବାର ବିଧି ରହିଛି । କିନ୍ତୁ ଈଶାଣ ମୁଖୀ ହୋଇ ଯାତ୍ରା କରିବା ମୂଳରେ ସେହି ଶବର ପ୍ରଭାବ ପରିଦୃଷ୍ଟ । ରଥଯାତ୍ରା ସମୟରେ ଡାହୁକନାମଧାରୀ ସେବାୟତ ନାନାଦି ଅଶ୍ଳୀଳ ଦୋହାବୋଲି ରଥ ବରଣ୍ଡରେ ନୃତ୍ୟ କରନ୍ତି । ପର୍ଣ୍ଣଶବରି ମାନଙ୍କର ପାରମ୍ପରିକ ବିଶ୍ୱାସ ଯେ ନଗ୍ନ ଓ ଅଶ୍ଳୀଳ କଥାଶୁଣି ଅମଙ୍ଗଳର ଅଧିଦେବତାମାନେ ଦୂର ହୋଇ ଯିବେ ଏବଂ ଶ୍ରୀବିଗ୍ରହମାନଙ୍କର ତଥା ଦେବତାମାନଙ୍କର କୌଣସି ଅନିଷ୍ଟ ହେବନାହିଁ ।

ରଥକୁ ବିଜେ କରାଇବା ପୂର୍ବରୁ ଶ୍ରୀମୂର୍ତ୍ତିମାନଙ୍କର ବାହୁରେ ବିଭିନ୍ନ ଲତା ଚେରର ଓ ମୂଳ ମୂଳିକାର ଡେଉଁରିଆ ଦଇତାମାନେ ବାନ୍ଧି ଦିଅନ୍ତି । ଶରୀର ରକ୍ଷା ପାଇଁ ଏଗୁଡ଼ିକ ତାନ୍ତ୍ରିକ କବଚ । ଉପରୋକ୍ତ ପ୍ରଣାଳୀଗୁଡ଼ିକ ମଧ୍ୟ ଶାବରପ୍ରଣାଳୀ । ସ୍ନାନ ପୂର୍ଣ୍ଣିମାରେ ଅନୁଷ୍ଠିତ ହେଉଥିବା ମଞ୍ଚସ୍ନାନ ଆପାତତଃ ବୈଦିକ ଜଣାଯାଉଥିଲେ ସୁଦ୍ଧା ଏହା ଶାବର ପ୍ରଥାରେ ହିଁ ଅନୁଷ୍ଠିତ । ଆବଦ୍ଧ ଜଳରେ ଅଭିଷେକ କରାଇବାର ବିଧି ବୈଦିକ ନୁହେଁ । ସ୍ୱଚ୍ଛ ଓ ସ୍ରୋତସ୍ୱାନ ଜଳ ଏଥିପାଇଁ ପ୍ରକୃଷ୍ଟ । କିଂତୁ ମଞ୍ଚସ୍ନାନରେ ଯେଉଁ ଜଳବ୍ୟବହୃତ ହୁଏ, ତାହା ଏକ ଆବଦ୍ଧ କୂପରୁ ଆସିଥାଏ । ଉତ୍ତରଦ୍ୱାରସ୍ଥିତ ସୁବର୍ଣ୍ଣକୂପର (ସୁନାକୂଅ) ଜଳ ବର୍ଷସାରା ଆବଦ୍ଧ ହୋଇଥାଏ ଓ ସ୍ନାନମଂଚରେ ସେହି ଜଳରେ ଅଭିଷେକ କରାଯାଏ । ଶବରମାନେ ଦେବତା ପୂଜାପାଇଁ ନିବିଡ଼ ଅରଣ୍ୟରେ ଥିବା ଓ ସୂର୍ଯ୍ୟ କିରଣ ପଡୁନଥିବା "ଅନଡ଼୍‌ବାହ" ଜଳକୁ ପବିତ୍ରବୋଲି ଭାବଥାନ୍ତି ଓ ବ୍ୟବହାର କରନ୍ତି । ଉକ୍ତପ୍ରଥାର ଅନୁକରଣରେ ଏଠାରେ କିରଣ ପଡୁନଥିବା ଆବଦ୍ଧ କୂପର ଜଳ ବ୍ୟବହାର କରାଯାଏ ।

ଉପରୋକ୍ତ ବର୍ଣ୍ଣନାରୁ ଶ୍ରୀକ୍ଷେତ୍ରରେ ଶାବର ପ୍ରଭାବର ପ୍ରାଧାନ୍ୟ ସ୍ୱୀକାର୍ଯ୍ୟ । ସେମାନେ ଜଗନ୍ନାଥଙ୍କୁ ଜ୍ଞାତିରୂପେ ଭାବନ୍ତି ଓ ସେହିପରି ଆଚରଣ ମଧ୍ୟ କରିଥାନ୍ତି । ଜଗନ୍ନାଥଙ୍କ ସହିତ ଏକତ୍ର ବସି ଜ୍ଞାତିସାର ଭୋଜନ କରିବା କେବଳ ଦଇତାମାନଙ୍କ ପକ୍ଷରେ ସମ୍ଭବ । ଶ୍ରୀବିଗ୍ରହମାନଙ୍କର ସଂପାଦନ ଓ ସୁରକ୍ଷାରେ ଦଇତାମାନଙ୍କର ଅଧିକାର ରହିଛି । ଜଗନ୍ନାଥଙ୍କ ସେବା ଓ ଆରାଧନାଦିରେ ବୈଦିକ ଆର୍ଯ୍ୟ ଓ ଆର୍ଯ୍ୟେତର ମାନଙ୍କର ଅପୂର୍ବ ସମନ୍ୱୟ ଘଟିଅଛି । ଅବଶ୍ୟ କେବଳ ୨ଟି ଯାତ୍ରାରେ ଏମାନଙ୍କର ଅଧିକାର ଓ ସେବାଦି ଅବ୍ୟାହତ ରହିଛି । ଅନ୍ୟ ସମୟରେ ପୂଜାରେ ଏମାନଙ୍କର

ଅଧିକାର ନାହିଁ । କିନ୍ତୁ ଏହି ସମନ୍ୱୟ ଆସିବା ପୂର୍ବରୁ ସଂଘର୍ଷ ଅବଶ୍ୟମ୍ଭାବୀ ହୋଇଥିବ । ଆଦିପୂଜକ ବିଶ୍ୱାବସୁ ବିଦ୍ୟାପତିଙ୍କୁ ନୀଳମାଧବ ଦର୍ଶନରୁ ବଂଚିତ କରିବା ପାଇଁ ସେଦିନ ଯେଉଁ ପ୍ରଚେଷ୍ଟା ଚଳାଇଥିଲା, ସେହି ପ୍ରଚେଷ୍ଟା ମୂଳରେ ସଂଘର୍ଷର ବୀଜ ନିହିତ । ଆର୍ଯ୍ୟ ରାଜା ଇନ୍ଦ୍ରଦ୍ୟୁମ୍ନ ଶାବର ନାରାୟଣ ନୀଳ ମାଧବଙ୍କୁ ଆର୍ଯୀକରଣ କରିବା ପାଇଁ ଇଚ୍ଛା କରିଥିଲେ । କିଂନ୍ତୁ ଶବରମାନେ ଏହାର ବିରୋଧ କରିବାକୁ କୁଣ୍ଠିତ ହୋଇ ନଥିଲେ । ଏହି ସଂଘର୍ଷରେ କିଏ ଜିତିଛି ବା କିଏ ହାରିଛି କହିହେବ ନାହିଁ । କିଂନ୍ତୁ ଉଭୟଗୋଷ୍ଠୀ ସଂସ୍କୃତିର ଆଦାନ ପ୍ରଦାନ ଭଙ୍ଗୀରେ ଉଭୟଙ୍କୁ ମହିମାନ୍ୱିତ କରିଛନ୍ତି । ବସ୍ତୁତଃ ସମଗ୍ର ଭାରତୀୟ ସଂସ୍କୃତି ଜଗନ୍ନାଥ ସଂସ୍କୃତିର ଅନୁରୂପ । ବିଭିନ୍ନ ସଂପ୍ରଦାୟ, ଜାତି, ବର୍ଣ୍ଣ, ଆଚାର, ଚଳଣି ଏହି ଧର୍ମରେ ଏକ ହୋଇ ଅଭିନବ ସଂସ୍କୃତି ସୃଷ୍ଟିକରିପରି ବହୁ ସଂସ୍କୃତିର ଧାରା ଭାରତୀୟ ସଂସ୍କୃତି ରୂପକ ମହାସାଗରକୁ ପୁଷ୍କଳ କରିଛି । ସେହି ଭାରତୀୟ ସଂସ୍କୃତିର ପ୍ରତୀକ ହିଁ ଏ ଜଗନ୍ନାଥ । କବୀନ୍ଦ୍ର ରବୀନ୍ଦ୍ରନାଥଙ୍କର "ଏଇ ଭାରତେର ମହାମାନବେର ସାଗରତୀରେ" ବାଣୀର ଏକ ସାର୍ଥକ ସ୍ୱର୍ଗୀୟ ରୂପାୟନ ସୃଷ୍ଟିର ଆଦିକାଳରୁ ଏହି ଉତ୍କଳର ସାଗର-ତୀରରେ ହୋଇ ରହିଅଛି ।

## ମୂର୍ତ୍ତିତତ୍ତ୍ୱ ଓ ଦର୍ଶନ

ବାଚସ୍ପତି ମିଶ୍ରଙ୍କ ତୀର୍ଥ ଚିନ୍ତାମଣି ଗ୍ରନ୍ଥୋକ୍ତ ଜଗନ୍ନାଥ ବଳଭଦ୍ରାଦି ମୂର୍ତ୍ତି ଚତୁଷ୍ଟୟଙ୍କ ପୂଜା ପାଞ୍ଚରାତ୍ର ଆଗମ ଅନୁସାରେ ଅନୁଷ୍ଠିତ ହେଉଅଛି ଏବଂ ସେମାନେ ଚତୁର୍ବ୍ୟୂହାତ୍ମକ । ଯଦି ପାଞ୍ଚରାତ୍ର ଆଗମ ଅନୁଯାୟୀ ଚତୁର୍ଦ୍ଧା ମୂର୍ତ୍ତିଙ୍କର ତତ୍ତ୍ୱାଲୋଚନା କରାଯିବ ତେବେ ସେମାନେ ହେବେ—ବିରାଟ, ସୂତ୍ରାତ୍ମା,

ଅନ୍ତର୍ଯ୍ୟାମୀ ଓ ଶୁଦ୍ଧର ପ୍ରତୀକ। ବଳଭଦ୍ର ବିରାଟ,ସୁଭଦ୍ରା ସୂତ୍ରାତ୍ମା। ଜଗନ୍ନାଥ ଅନ୍ତର୍ଯ୍ୟାମୀ ଓ ସୁଦର୍ଶନ ଶୁଦ୍ଧ। ପୁଣି ସଂହିତା ଅନୁଯାୟୀ ସେମାନେ ବିଶ୍ୱ, ତୈଜସ, ପ୍ରାଜ୍ଞ ଓ ତୁରୀୟର ପ୍ରତୀକ ହେବେ। ବଳରାମ ବିଶ୍ୱ, ସୁଭଦ୍ରା ତୈଜସ, ଜଗନ୍ନାଥ ପ୍ରାଜ୍ଞ ଓ ସୁଦର୍ଶନ ତୁରୀୟ। କିନ୍ତୁ ସ୍କନ୍ଦପୁରାଣ ଓ ପଞ୍ଚସଖା ଯୁଗର ଦାର୍ଶନିକ କବିମାନେ ଏହାଙ୍କୁ ବେଦମୟ ପୁରୁଷ ଭାବରେ କଳ୍ପନା କରିଛନ୍ତି।

ଜଗନ୍ନାଥ—ସାମ। ବଳରାମ—ଋକ୍।

ସୁଭଦ୍ରା—ଯଜୁଃ। ସୁଦର୍ଶନ—ଅଥର୍ବ।

ଜଗନ୍ନାଥ ବଳଭଦ୍ର ସୁଭଦ୍ରା ଏବଂ ତତ୍ସହିତ ସୁଦର୍ଶନର ଧାରଣା ମନେହୁଏ ଯୌଗିକ ତାନ୍ତ୍ରିକ ପଦ୍ଧତି ଭିତରୁ ସୃଷ୍ଟି ହୋଇ ପୌରାଣିକ ଏବଂ ବୈଷ୍ଣବୀୟ ପରିବେଶରେ ପ୍ରକାଶଲାଭ କରିଛି। ଯଦିଓ ଏହି ବିଗ୍ରହ ଚତୁର୍ଦ୍ଧାମୂର୍ତ୍ତି ରୂପେ ପ୍ରତିଷ୍ଠିତ, ତଥାପି ତାହା ଏକକ ବିଗ୍ରହ ରୂପେ ପରିଗଣିତ। ତେଣୁ ପ୍ରତିଷ୍ଠିତ ଓ ଅବିଚ୍ଛିନ୍ନ ପରମ୍ପରାନୁଯାୟୀ ଦୈନିକ ପୂଜାସ୍ଥାନରେ ତିନିଜଣ ପୂଜକ ଏକ ସଙ୍ଗରେ ପୂଜାକାର୍ଯ୍ୟ ନିର୍ବାହ କରନ୍ତି।

ଆଦି କାଳରେ ସମ୍ଭବତଃ ବିଗ୍ରହମାନେ ବିଚ୍ଛିନ୍ନସତ୍ତ୍ୱରୂପେ ଗୃହୀତ ନହୋଇ ସେହି ଏକକ ଓ ଅଭିନ୍ନ ବ୍ରହ୍ମ ବା ପୁରୁଷୋତ୍ତମଙ୍କ କେବଳ ଭିନ୍ନ ଭିନ୍ନ ପ୍ରତୀକ ରୂପେ ବିବେଚିତ ହେଉ ଥିଲେ। ତେଣୁ ଏହି ବିଗ୍ରହକୁ ୨ଟି ପୁରୁଷ ଗୋଟିଏ ନାରୀ ଏବଂ ଅବଶିଷ୍ଟ ସୁଦର୍ଶନକୁ ଉଭୟ ନାରୀ-ପୁରୁଷ ବା ପ୍ରତୀକ ରୂପେ ଗଣନା କରିବାର କୌଣସି ଭିତ୍ତି ନାହିଁ ବୋଲି କେହି କେହି କହିଥାନ୍ତି। ବିଗ୍ରହମାନଙ୍କୁ ଏହିପରି ନାରୀ ପୁରୁଷ ଭାବରେ ବିଭକ୍ତ କରିବାର କଳ୍ପନା ପରବର୍ତ୍ତୀ କାଳରେ ସୃଷ୍ଟି ବୋଲି ମନେହୁଏ। ଏହି ଧାରଣା ଷୋଡ଼ଶ ଶତାବ୍ଦୀରେ ରଚିତ ବାଚସ୍ପତିମିଶ୍ରଙ୍କ "ତୀର୍ଥ ଚିନ୍ତାମଣି"

ଗ୍ରନ୍ଥ ଓ ତାର ବହୁ ପୂର୍ବରୁ ପ୍ରଚଳିତ ପାଞ୍ଚରାତ୍ର ପୂଜାବିଧିରୁହିଁ ପ୍ରମୃତ । ବଶିଷ୍ଟା ଦ୍ୱୈତ ବାଦୀ ରାମାନୁଜାଚାର୍ଯ୍ୟ ଜଗନ୍ନାଥ ମନ୍ଦିରରେ ପାଞ୍ଚରାତ୍ର ପୂଜାବିଧି ପ୍ରଚଳନ କରିବା ଓ ଚତୁର୍ବ୍ୟୂହ ପଦ୍ଧତିରେ ବିଗ୍ରହ ନାମ କରଣ କରିବାକୁ ଚେଷ୍ଟା କରିଥିଲେ । ସେମାନେ ବୋଧହୁଏ ବାସୁଦେବରୂପୀ ଜଗନ୍ନାଥଙ୍କ ଜ୍ଞାନଶକ୍ତିକୁ ବଳଭଦ୍ର, ଇଚ୍ଛାଶକ୍ତିକୁ ସୁଭଦ୍ରା ଓ କ୍ରିୟା ଶକ୍ତିକୁ ସୁଦର୍ଶନ ରୂପେ ଗ୍ରହଣ କରିଛନ୍ତି । ତେଣୁ ବ୍ୟୂହବାଦର ଆରୋପ ଏସ୍ଥଳରେ ଏଦୃଷ୍ଟିରୁ ସମୀଚୀନ ବୋଲି ମନେହୁଏ ।

ଜ୍ଞାନଶକ୍ତି ମହତ୍ତ୍ୱ ତତ୍ତ୍ୱ ରୂପୀ ସଂକର୍ଷଣ—ବଳଭଦ୍ର ।
ଇଚ୍ଛାଶକ୍ତି ଅହଂ ତତ୍ତ୍ୱ ରୂପ—ସୁଭଦ୍ରା ।
କ୍ରିୟାଶକ୍ତି ମନସ୍ତତ୍ତ୍ୱାତ୍ମକ—ସୁଦର୍ଶନ ।

ବ୍ରହ୍ମ ପୁରାଣ ଦ୍ୱାରା ସମର୍ଥିତ ଏହି ବ୍ୟାଖ୍ୟା ଅନୁସାରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ଏହି ଚତୁର୍ଦ୍ଧା ମୂର୍ତ୍ତି ଯଥାକ୍ରମେ ବାସୁଦେବ, ସଂକର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧଙ୍କର ପ୍ରତିରୂପ ରୂପେ ବିଦ୍ୟମାନ । କିନ୍ତୁ ରତ୍ନବେଦୀରେ ଏହି ଚତୁର୍ଦ୍ଧା-ମୂର୍ତ୍ତିର ଉପବେଶନ ଓ ସ୍ଥାପନର, ଧାରା ସହିତ ଚତୁର୍ବ୍ୟୂହ ବର୍ଣ୍ଣିତ ଉପସ୍ଥାପନର ଧାରାର ବ୍ୟତିକ୍ରମ ଦେଖାଯାଏ । କାରଣ ଏଠାରେ ଦେବତାମାନେ ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନ ରୂପେ ଉପବିଷ୍ଟ । ଚତୁର୍ବ୍ୟୂହ ମଧ୍ୟରୁ ଗୋଟିଏ ବ୍ୟୂହ ମଧ୍ୟ ସୁଭଦ୍ରା ଭଳି ନାରୀମୂର୍ତ୍ତି ନୁହଁନ୍ତି । ତାହାହେଲେ ପାଞ୍ଚରାତ୍ର ଆଗମର ସମର୍ଥକମାନେ ଏହାଙ୍କୁ (ସୁଭଦ୍ରା) କପରି ଏକ ପୁରୁଷ ବିଗ୍ରହ ରୂପେ ଚିନ୍ତା କରିପାରିଲେ ଏବଂ ଏକ ପ୍ରତୀକ ବିଗ୍ରହ ସୁଦର୍ଶନଙ୍କୁ ଅନିରୁଦ୍ଧ ବ୍ୟୂହ ରୂପେ ସମର୍ଥନ କଲେ ତାହା ଅନୁଧ୍ୟାନର ବିଷୟ । ଆମର ମନେହୁଏ ଏ ମୂର୍ତ୍ତି, ପ୍ରଣବମୂର୍ତ୍ତି । ବେଦ ଓ ଉପନିଷଦରେ ବର୍ଣ୍ଣିତ ପ୍ରଣବର ଚତୁରାତ୍ମା ଓ ବ୍ରହ୍ମର ଚତୁଷ୍ପାଦ । ପରବର୍ତ୍ତୀ

ଅବସ୍ଥାରେ ଧ୍ୟାନ, ପ୍ରଣବମନ୍ତ୍ର ତା ନ୍ୟାସକୁ ଆଶ୍ରୟ କରି ଉପଲବ୍ଧ କରିଛି । ଯିଏ ପାଦ, ସେହି ମାତ୍ରା—ତେଣୁ ଯଥାର୍ଥରେ ମାଣ୍ଡୁକ୍ୟ ଉପନିଷଦ କହୁଛି । "ସୋଽୟମାତ୍ମାଽଧ୍ୟକ୍ଷରମୋଙ୍କାରୋଽଧିମାତ୍ରଂ । ପାଦାଃ ମାତ୍ରାଃ, ମାତ୍ରାଶ୍ଚ ପାଦାଃ ଅକାର ଉକାର ମକାର ଇତି ।"

ତେଣୁ ଏମାନେ ପୁଣି ଓଁକାରରୂପୀ । ଦାର୍ଶନିକ ଓ ଭକ୍ତ ଅଚ୍ୟୁତାନନ୍ଦ ଏ ମୂର୍ତ୍ତି ଚତୁଷ୍ଟୟଙ୍କୁ ଓଁକାର ଯନ୍ତ୍ରରେ ବସାଇ ଏକ ମନୋରମ କଳ୍ପନାର ଆଶ୍ରୟ ଦେଇଛନ୍ତି ।

ସ୍କନ୍ଦପୁରାଣ, ନୀଳାଦ୍ରି ମହୋଦୟ, କ୍ଷେତ୍ର ମାହାତ୍ମ୍ୟ ଓ ସୌଭାଗ୍ୟ ମଂଜୁଷା ପ୍ରଭୃତି ଗ୍ରନ୍ଥରେ ଏମାନଙ୍କୁ ଓଁକାର ରୂପୀ ତଥା ପ୍ରଣବର ପ୍ରତିମୂର୍ତ୍ତି ବୋଲି ବର୍ଣ୍ଣନା କରାଯାଇଛି । ସ୍କନ୍ଦପୁରାଣରେ ବହୁବାର "ଦେବାଃ ପ୍ରଣବରୂପିଣଃ" ବୋଲି ଉକ୍ତ ଅଛି । ଜଗନ୍ନାଥଙ୍କ ଠାରେ ଆଚରିତ ପୂଜା ପଦ୍ଧତିରେ ପ୍ରଣବନ୍ୟାସ ବହୁଳଭାବରେ ପ୍ରଦର୍ଶିତ ହେଉଅଛି । ଜଗନ୍ନାଥଙ୍କୁ ଦାରୁବ୍ରହ୍ମ ବୋଲି ବର୍ଣ୍ଣନା କରିବା ଏବଂ କାଷ୍ଠ ଖୋଦିତ ବିଗ୍ରହ ରୂପେ ପୂଜା କରିବା ମୂଳରେ ଏହି ଓଁକାର ଭାବ ଓ ଆଦର୍ଶ ନିହିତ । ଏହି ଚତୁର୍ଦ୍ଧା ମୂର୍ତ୍ତି କାଷ୍ଠରେ ନିର୍ମିତ ହେବାର ଅର୍ଥ ନୁହେଁ ଯେ ଏଥିପାଇଁ ଶିଳା ବା ଧାତୁର ଅଭାବ; ତାର ମୌଳିକ କାରଣ ହେଉଛି ଏହି ବିଗ୍ରହ ପୂର୍ବକାଳରେ ଶିଳା କିମ୍ବା ଧାତୁରେ ତିଆରି ହେଉଥିବାର କୌଣସି ସମର୍ଥନ ଯୋଗ୍ୟ ବିଧି ବିଧାନର ପ୍ରମାଣ ମିଳେନାହିଁ । ତେଣୁ ଏହି ବିଗ୍ରହ କାଷ୍ଠରେ ନିର୍ମିତ ହେବ ବୋଲି ଅଲଂଘନୀୟ ବିଧାନ ରହିଛି । ଦାରୁବ୍ରହ୍ମ କଥାର ସାର୍ଥକତା ଏଠାରେ ହିଁ ପ୍ରମାଣିତ । ନୀଳାଦ୍ରି ମହୋଦୟ ଗ୍ରନ୍ଥ ଏ ସମ୍ପର୍କରେ ବିଶଦ ବ୍ୟାଖ୍ୟା ଦେଇ ଆମ ଯୁକ୍ତିକୁ ସମର୍ଥନ କରୁଛି "ପ୍ରଣବର" ତିନୋଟି ପୂର୍ଣ୍ଣମାତ୍ରା ଓ ଗୋଟିଏ ଅର୍ଦ୍ଧ ମାତ୍ରା ରହିଛି । ଯାହାକୁ ନାଦବିନ୍ଦୁ ବୋଲି କୁହାଯାଏ ଏବଂ ଯାହା ଜଗନ୍ନାଥଙ୍କ ସହିତ ଜଡ଼ିତ । ତେଣୁ

ମାଳାଦ୍ରି ମହୋଦଧିରେ ଜଗନ୍ନାଥ "ନାଦବିନ୍ଦୁ ସମନ୍ୱିତ" ବୋଲି ବର୍ଣ୍ଣିତ ।

ଶାସ୍ତ୍ରୀୟ ଓ ତାତ୍ତ୍ୱିକ ବ୍ୟାଖ୍ୟା ବ୍ୟତିରେକେ ଆଉ ଏକ ବୈଷ୍ଣବୀୟ ବ୍ୟାଖ୍ୟା ମଧ୍ୟ ଏହି ତ୍ରିମୂର୍ତ୍ତିଙ୍କ ସମ୍ବନ୍ଧରେ ବୈଷ୍ଣବ ଜଗତରେ ପ୍ରଚଳିତ ଓ ସମାଦୃତ । ଏଥିରେ ମଧ୍ୟ ଗୂଢ଼ଦାର୍ଶନିକ ତତ୍ତ୍ୱ ସହିତ ମୂର୍ତ୍ତିମାନଙ୍କୁ ଯିଏ ଯେପରି ଭାବରେ ଓ ସଂଖ୍ୟାରେ ଗଣନା କଲେ ମଧ୍ୟ ତାର ଉପଯୁକ୍ତ ପାରମାର୍ଥିକ ବ୍ୟାଖ୍ୟା ପ୍ରଦାନ କରିହେବ । ଅତିପାର୍ଥିବ ଯେଉଁ ଆତ୍ମ ଚେତନା, ତାର ତିନୋଟି ସ୍ତର । ପ୍ରଥମ ବା ସର୍ବୋଚ୍ଚ ସ୍ତର ତାହା ସଗୁଣ ନିର୍ଗୁଣ ବା ବ୍ୟକ୍ତ ଅବ୍ୟକ୍ତ ଏହି ଦୁଇ ଅଚିନ୍ତ୍ୟ ତଥା ପରସ୍ପର ବିରୋଧୀ ଭାବରେ ପରିପୂର୍ଣ୍ଣ ପରିସ୍ଫୁଟ ସାମଞ୍ଜସ୍ୟର ଯେଉଁ ଆଦର୍ଶ ଭୂମି—ଏହାହିଁ ପୁରୁଷୋତ୍ତମଙ୍କ ସ୍ତର; ସେ ଜଗନ୍ନାଥ । ସେ କ୍ଷରାକ୍ଷରର ଅତୀତ, ଲୟାଧାର । ଏଣୁ କୃଷ୍ଣବର୍ଣ୍ଣ । କାରଣ କୃଷ୍ଣବର୍ଣ୍ଣ ଯାବତୀୟ ବର୍ଣ୍ଣକୁ ଆତ୍ମସାତ୍ କରେ । ଦ୍ୱିତୀୟ ଯେଉଁ ସ୍ତର, ସେଠାରେ ନିର୍ଗୁଣ ବା ଅବ୍ୟକ୍ତ ପୁରୁଷ ଅସ୍ପଷ୍ଟ ଭାବର ବିଷୟରେ ପରିସ୍ଫୁଟ ହୋଇ ଅଛନ୍ତି ଏବଂ ସେଥିରେ ସୃଷ୍ଟିତତ୍ତ୍ୱର ସଗୁଣ ବ୍ୟକ୍ତ ଭାବ ସଂପୂର୍ଣ୍ଣ ଭାବେ ଅପରିସ୍ଫୁଟ ବା କୂଟସ୍ଥ; ଏହାହିଁ ଅକ୍ଷର ପୁରୁଷର ସ୍ତର—ବଳରାମ । ସେ ଶ୍ୱେତବର୍ଣ୍ଣ, ଅନନ୍ତନାଗ ଓ ଶିବ । ଆଉ ତୃତୀୟ ଯେଉଁ ସ୍ତର, ତାହା ଅସ୍ପଷ୍ଟ ଭାବ ଭିତରେ ମଧ୍ୟ ସୃଷ୍ଟି-ଉନ୍ମୁଖ ସ୍ୱରୂପ । ତେଣୁ ତାହା ନିର୍ଗୁଣ ଅବସ୍ଥା ମଧ୍ୟରେ ସଗୁଣ ଭାବର ପରିସ୍ଫୁଟୋ-ନ୍ମୁଖୀ ଅବସ୍ଥାରେ ରହିଅଛି । ଏହାହିଁ କ୍ଷର ପୁରୁଷର ପରିସ୍ଫୁରଣ ଉନ୍ମୁଖୀ ଅପରିସ୍ଫୁଟ ଅବସ୍ଥାର ସ୍ତର । ଏହାହିଁ କ୍ଷର ପୁରୁଷ । ଏଠାରେ କିଛି ଅପ୍ରକାଶିତ ପୁଣି କିଛି ପ୍ରକାଶିତ ଅବସ୍ଥାରେ ରହି ନିମ୍ନାବତରଣରେ ପରିସ୍ଫୁଟ ଅବସ୍ଥାରେ ସୃଷ୍ଟିତତ୍ତ୍ୱର ଧାରକ ଓ

ପୋଷାକ ଆତ୍ମା ରୂପରେ ବିଦ୍ୟମାନ । ଏ ହେଉଛନ୍ତି ସୁଭଦ୍ରା, ସେ ପୀତବର୍ଣ୍ଣା, ସୃଷ୍ଟିର ଉପାଦାନ ପୃଥ୍ୱୀସ୍ୱରୂପା ।

ଏହି ଆଦି ଚେତନାର ସ୍ୱରୂପରେ ଅନାଦି ସତ୍ୟ ଯେ ଭଗବାନ , ସେ ଅନନ୍ତ ହୋଇ ମଧ୍ୟ ଶାନ୍ତ ; ସେ ନିରାକାର ହୋଇ ମଧ୍ୟ ସାକାର ଅର୍ଥାତ ଯେ କୌଣସି ଆକାରରେ ପ୍ରକାଶର ସମ୍ଭାବନା ଯୁକ୍ତ ଅବସ୍ଥାରେ ଅବସ୍ଥିତ । ସେ ସକଳର ଅତୀତତତ୍ତ୍ୱ ରୂପେ ରହି ମଧ୍ୟ ସମସ୍ତର ପରିପୂରକ; ସେ ଏକ ଅଦ୍ୱୈତ ସତ୍ୟ ରୂପେ ରହି ମଧ୍ୟ ବହୁ ଆକାରରେ ପ୍ରକାଶିତ ।

ସତ୍ୟର ସ୍ୱରୂପଗତ ଏହି ପରସ୍ପର ବିରୋଧୀ ଭାବର ସାମଞ୍ଜସ୍ୟ ପରୋକ୍ଷ ଅବଧାରଣାର ବହୁ ଊର୍ଦ୍ଧ୍ୱରେ ଅବସ୍ଥିତ । ତେଣୁ ଊର୍ଦ୍ଧ୍ୱଚେତନାର ଅପରୋକ୍ଷାନୁଭୂତିର ଆଲୋକ ବ୍ୟତୀତ ଭଗବାନଙ୍କର ସେହି ସମସ୍ତ ଅଚିନ୍ତ୍ୟ ଶକ୍ତିର ଅବଧାରଣା ମନୁଷ୍ୟ ପକ୍ଷରେ ସହଜ ସାଧ୍ୟ ନୁହେଁ । ତେଣୁ ଜଗନ୍ନାଥ ଦେବଙ୍କ ମୂର୍ତ୍ତି ( ଅବୟବ ) ସମ୍ପର୍କରେ ଦାର୍ଶନିକ ମତବାଦର ଆଲୋଚନା କରିବାକୁ ଯାଇ ଜଗନ୍ନାଥଙ୍କୁ ସଚ୍ଚିଦାନନ୍ଦମୟ ବୋଲି କଳ୍ପନା କରାଯାଇ ପାରେ ।

ଜଗନ୍ନାଥ —ପ୍ରେମରେ ସେ ସ୍ୱୟଂ ପୂର୍ଣ୍ଣ, ପୂର୍ଣ୍ଣାତ୍ ପୂର୍ଣ୍ଣ ଓ ଅନାଦି ସତ୍ୟ ରୂପରେ ବିରାଜିତ । ଏହା ତାଙ୍କର ପ୍ରେମରୂପ ।

ଜ୍ଞାନରେ—ସେ ବହୁତ୍ୱର ବିଚିତ୍ରତାରେ ନିଜକୁ ଲୟ କରି ପରିପୂର୍ଣ୍ଣ ଅଦ୍ୱୈତର ଚିତ୍ ସ୍ୱରୂପରେ ବିରାଜିତ । ଏହା ତାଙ୍କର ଜ୍ଞାନରୂପ । ସେ ନିର୍ଗୁଣ ହୋଇ ମଧ୍ୟ ସଗୁଣ ସୃଷ୍ଟିତତ୍ତ୍ୱ ଏବଂ ଏହାର ଅନ୍ତସ୍ଥ ଆତ୍ମା ରୂପେ ଆନନ୍ଦ ସ୍ୱରୂପରେ ଉଚ୍ଛ୍ୱସିତ । ଏହା ତାଙ୍କର ଶକ୍ତିରୂପ ବା ଆନନ୍ଦରୂପ ।

ଯେଉଁ ଭଗବାନ ତିନ ଭାବରେ ଓ ତିନ ସ୍ତରରେ ବିଦ୍ୟମାନ ବା ଅବସ୍ଥିତ, ଯଦିଓ ସେହି ତିନ ସ୍ତରହିଁ ତାଙ୍କର ସଚ୍ଚିଦାନନ୍ଦ ସ୍ୱରୂପ; ତଥାପି ପୁରୁଷୋତ୍ତମ ସ୍ତରରେ ଏହାହିଁ ତାଙ୍କର ସତ୍ ସ୍ୱରୂପର, ଅକ୍ଷର ପୁରୁଷର ସ୍ତରରେ ତାଙ୍କର ଚିତ୍ ସ୍ୱରୂପର ଏବଂ କ୍ଷର ପୁରୁଷର ସ୍ତରରେ ତାହାଙ୍କର ଆନନ୍ଦ ସ୍ୱରୂପର ବିଶେଷତ୍ୱ ରହିଅଛି । ସେଇଥିପାଇଁ ଜଗନ୍ନାଥ ରୂପୀ ଭଗବାନ ସତ୍ ସ୍ୱରୂପ, ବଳରାମ ଚିତ୍ ସ୍ୱରୂପ ଓ ସୁଭଦ୍ରା ଆନନ୍ଦ ସ୍ୱରୂପ । ପ୍ରକାଶ ଭୂମିରେ ପୁଣି ସତ୍ ସ୍ୱରୂପରେ ଜଗନ୍ନାଥ ଭବବାନଙ୍କର ପ୍ରେମଘନ ମୂର୍ତ୍ତି, ଚିତ୍ ସ୍ୱରୂପରେ ବଳରାମ ଭଗବାନଙ୍କ ବିଜ୍ଞାନଘନ ମୂର୍ତ୍ତି ଓ ଆନନ୍ଦ ସ୍ୱରୂପରେ ସୁଭଦ୍ରା ଭଗବାନଙ୍କର ଶକ୍ତି ତଥା ଆନନ୍ଦ ଘନମୂର୍ତ୍ତି । ଭଗବାନଙ୍କର ତିନ ସ୍ତରରେ ଏହାହିଁ ଅବସ୍ଥିତିର ସ୍ୱରୂପଗତ ପରିଚୟ ।

| ବଳରାମ | ସୁଭଦ୍ରା | ଜଗନ୍ନାଥ |
|---|---|---|
| ଅକ୍ଷର ପୁରୁଷ | କ୍ଷର ପୁରୁଷ | କ୍ଷରାକ୍ଷରର ଅତୀତ ପୁରୁଷୋତ୍ତମ |
| ନିର୍ଗୁଣଆତ୍ମା | ସଗୁଣଆତ୍ମା | ପରମାତ୍ମା |
| ଅବ୍ୟକ୍ତ | ବ୍ୟକ୍ତ | ବ୍ୟକ୍ତା ବ୍ୟକ୍ତ |
| ନିଗୁଣବ୍ରହ୍ମ | ସଗୁଣବ୍ରହ୍ମ | ପରମବ୍ରହ୍ମ |
| ଶିବ | ଶକ୍ତି | ପରମପୁରୁଷ |
| ଚିତ୍ | ଆନନ୍ଦ | ସତ୍ |
| ଜ୍ଞାନ | କର୍ମ | ଭକ୍ତି |
| ବିଶ୍ୱାତୀତ | ବିଶ୍ୱବ୍ୟାପକ ତାରେ ପୂର୍ଣ୍ଣ | ପରିପୂର୍ଣ୍ଣସତ୍ତା |

ସୃଷ୍ଟ ଓ ଅସୃଷ୍ଟ ମଧ୍ୟରେ ଯେଉଁ ସାମଞ୍ଜସ୍ୟ ସୂତ୍ର ନିହିତ, ତାହା ଅତି ସୂକ୍ଷ୍ମ ଓ ଜଟିଳତା ପୂର୍ଣ୍ଣ । ଚେତନାର ଭିନ୍ନ ଭିନ୍ନ ସ୍ତର ମଧ୍ୟ ଦେଇ ସେହି ଜଟିଳତାର ଅନ୍ତପାତି ବ ସୂକ୍ଷ୍ମ ମିଳନ ରହିଛି । ଅନନ୍ତର **ଦର୍ଶନକ୍ଷମ ଚେତନାକୁ** ଜୀବନର ଜାଗ୍ରତ ଚେତନାମୟ ରୂପେ ପରିଣତ କରି ନ ପାରିଲେ ସେହି ବିଶ୍ୱାତୀତ ସୂକ୍ଷ୍ମ ବିଷୟକୁ ଧରିବା ଆଦୌ ସମ୍ଭବ ନୁହେଁ । ଅନନ୍ତର ଚେତନାକୁ ଜାଗ୍ରତ ଚେତନାମୟରୂପେ ପରିଣତ କରିବାର ପ୍ରଚେଷ୍ଟା ଇତି ପୂର୍ବେ କେବେ କେଉଁଠାରେ ହୋଇ ନ ଥିଲା ବା ନାହିଁ । ତେଣୁ ଜଗତକୁ ଏତେକାଳ ମାୟା ବୋଲି ଉଡ଼େଇ ଦେବା ଛଡ଼ା ଆଉ ଉପାୟନ୍ତର ନ ଥିଲା ସେହି ସୂକ୍ଷ୍ମତତ୍ତ୍ୱର ଅବଧାରଣା ଏହି କ୍ଷେତ୍ରରେ ହିଁ ସମ୍ଭବ ହୋଇ ଅଛି । ଧନ୍ୟ ଏହି ଦେଶ । ଧନ୍ୟ ଏହି ଦେବତା ଏବଂ ଧନ୍ୟ ଏ ଦେଶର ଶିଳ୍ପୀ :—

**" ଉତ୍କଳସ୍ୟ ସମଦେଶଃ ଦେଶୋନାସ୍ତି ମହୀତଳେ"**

ଜଗନ୍ନାଥ ଧାମସ୍ଥ ସକଳପ୍ରକାର ବ୍ୟବସ୍ଥା ଯେପରି ଅସାଧାରଣ, ପ୍ରତିଷ୍ଠିତ ଦେବତାଙ୍କ ମୂର୍ତ୍ତି ରହସ୍ୟ ସେହିପରି ଅସାମାନ୍ୟ ଓ ଅଲୌକିକ । ଯେଉଁ ଦୃଷ୍ଟି କୋଣରୁ ବିଚାର କଲେ ମଧ୍ୟ ବିଚାରକ ଏହି ସତ୍ୟରେହିଁ ଉପନୀତ ହୁଏ । ତାହା ହେଉଛି ଏ ମୂର୍ତ୍ତି ରୂପ ଓ ଅରୂପର ମିଳନାଦର୍ଶ, ନିରାକାର ଓ ସାକାରର ସମନ୍ୱୟ । ଦାର୍ଶନିକ, ସାଧକ, ଭକ୍ତମାନେ କେହି କେହି ଏହାଙ୍କୁ ମନ୍ତ୍ରମୟ ମୂର୍ତ୍ତି, କେହିବା ଯନ୍ତ୍ରମୟମୂର୍ତ୍ତି ବୋଲି ଗ୍ରହଣ କରିଛନ୍ତି । ପାଶ୍ଚାତ୍ୟ ସମାଲୋଚକ ଏବଂ କେତେକ ଐତିହାସିକ ସମାଲୋଚକ ଏହି ତିନୋଟି ମୂର୍ତ୍ତିଙ୍କୁ ଦେଖି ବୌଦ୍ଧୀୟ ତ୍ରିରତ୍ନ ସହିତ ଏହାର ସାମ୍ୟ ପ୍ରତିଷ୍ଠା କରିଛନ୍ତି । ମାତ୍ର ତାହା ଯଥାର୍ଥ ନୁହେଁ । ପୁନଶ୍ଚ ପଣ୍ଡିତମାନେ

ଏହି ମୂର୍ତ୍ତି ସମୂହଙ୍କୁ ସତ୍ତ୍ୱ, ରଜ, ତମ, ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଓ ଜାଗ୍ରତ ସ୍ୱପ୍ନ ସୁଷୁପ୍ତି ବୋଲି ମଧ୍ୟ କହିଛନ୍ତି । ଦାର୍ଶନିକ ଦୃଷ୍ଟି ଭଙ୍ଗୀରୁ ବିଚାର କଲେ ଏ ଚତୁର୍ଦ୍ଧା ମୂର୍ତ୍ତି ଯେ ଏକ ମୂର୍ତ୍ତିଧର ଏଥିରେ ସନ୍ଦେହ ନାହିଁ । ଏକ ମୂର୍ତ୍ତି ଚତୁର୍ଦ୍ଧା ବିଭକ୍ତ । ଏଥିରେ ସୃଷ୍ଟିସ୍ୱରୂପ ନିହିତ ।

ଜଗନ୍ନାଥ ଅବ୍ୟକ୍ତ ପୁରୁଷ । ସେହି ଅବ୍ୟକ୍ତ ପୁରୁଷ ଶ୍ରୀ ଜଗନ୍ନାଥ ନିଜର ଇଚ୍ଛା ରୂପିଣୀ ଶକ୍ତି ସୁଭଦ୍ରା ଓ ବିରାଟ ରୂପୀ ବଳଭଦ୍ର ରୂପେ ବ୍ୟକ୍ତ ହୋଇ ଅଛନ୍ତି । ସେହି ବ୍ୟକ୍ତା ବିସ୍ଥାର ପ୍ରକାଶିକ ଶକ୍ତିହିଁ ସୁଭଦ୍ରା ଓ ବିରାଟ ସ୍ଥୂଳ ଜଗତ୍ ବଳଭଦ୍ର ଏବଂ ସୃଷ୍ଟିର କାଳ ତତ୍ତ୍ୱ ସୁଦର୍ଶନ ରୂପେ ରତ୍ନ ବେଦୀରେ ପ୍ରକାଶିତ । ବଳଭଦ୍ର ସ୍ଥୂଳଜଗତର ଅଧୀଶ୍ୱର । ଜଗନ୍ନାଥ ସୂକ୍ଷ୍ମ ଜଗତର ଅଧୀଶ୍ୱର । ସୁଭଦ୍ରା ଏହି ଦୁଇ ଜଗତର ସଂଯୋଜୟିତ୍ରୀ— ତେଣୁ ମଧ୍ୟସ୍ଥିତା । ଜଗନ୍ନାଥ ଧାମ ବ୍ୟତୀତ ଆଉ କେଉଁ ଧାମରେ ସୃଷ୍ଟିତତ୍ତ୍ୱର ଆଦର୍ଶ ଏପରି ଭାବରେ ପ୍ରତିଷ୍ଠିତ ହୋଇ ପାରି ନାହିଁ । ଏହି ଧାମ ଏବଂ ଦେବତାଙ୍କ ଯୋଗୁ ଓଡ଼ିଶା ଆଜି ସାରା ବିଶ୍ୱରେ ସୁପରିଚିତ । ଏ ଦେଶକୁ ଜଗନ୍ନାଥ ଦେଶ ବୋଲି କୁହାଯାଏ । ଜଗନ୍ନାଥ କେବଳ ଜଗତରୂପୀ ନାଥ ନୁହନ୍ତି, ସେ ଜଗତର ନାଥ । ଓଡ଼ିଶାର ଧାର୍ମିକ, ସାଂସ୍କୃତିକ ଓ ସାମାଜିକ ଜୀବନରେ ଏହାଙ୍କ ପ୍ରଭାବ ଅସାଧାରଣ । ବାସ୍ତବରେ ଜଗନ୍ନାଥ ଜାତିର ହୃତ୍‌ପିଣ୍ଡ । ବିପଦ ଆପଦ ବ୍ୟବସାୟ ବାଣିଜ୍ୟ ଏପରିକି ବିବାହାଦି ମାଙ୍ଗଳିକ କାର୍ଯ୍ୟରେ ଜଗନ୍ନାଥଙ୍କ ନାମହିଁ ଅପୂର୍ବ ଉତ୍ସାହ ସୃଷ୍ଟିକରିଥାଏ । ଜଗନ୍ନାଥଙ୍କ ମହାପ୍ରସାଦ ତଥା କୈବଲ୍ୟ କଣିକା ଏଜାତି ନିକଟରେ ଯେ କେପରି ପବିତ୍ର ଓ ଜୀବନ ଦାୟକ ତାହା ପ୍ରତ୍ୟେକ ଭାରତୀୟ ସ୍ୱୀକାର କରେ ।

# ପରିଶିଷ୍ଟ

## ମନ୍ଦିର ପରିକ୍ରମା

ପୂର୍ବରୁ ସୂଚିତ ହୋଇଛି ଯେ ଏ କ୍ଷେତ୍ର **ଶଙ୍ଖକ୍ଷେତ୍ର** ନାମରେ ପରିଚିତ । ଏ କ୍ଷେତ୍ର ଯୋଗମାୟାଙ୍କର ଛଅଟି ପ୍ରକାଶ ବା ଶକ୍ତିଦ୍ୱାରା ସୁରକ୍ଷିତ । ଏହି ଛଅଟି ଶକ୍ତି ହେଲେ :— ବଟମୂଳରେ ମଂଗଳା, ପଶ୍ଚିମରେ ବିମଳା, ଶଂଖର ପୃଷ୍ଠଭାଗରେ ଶୀତଳା, ମାଉସୀମା, ଆଲମ୍ବା, ଦକ୍ଷିଣରେ କାଳରାତ୍ରି, ପୂର୍ବରେ ମରୀଚିକା, କାଳରାତ୍ରିର ପଶ୍ଚାଦ୍‌ଭାଗରେ ଚାମୁଣ୍ଡା । ଏହା ବ୍ୟତୀତ ଭୁବନେଶ୍ୱରୀ ପ୍ରଭୃତି ପ୍ରସିଦ୍ଧ ଶାକ୍ତଦେବୀ ସର୍ବଦା ଏ କ୍ଷେତ୍ରରେ ପ୍ରହରୀରୂପେ ରହି ଜୀବର ଯାବତୀୟ ଅମଂଗଳ ଖଣ୍ଡନ କରୁଅଛନ୍ତି । ଏହା ଏକ ଦ୍ୱି-ଆବରଣ ମନ୍ଦିର । ପ୍ରଥମ ଆବରଣର ନାମ ମେଘନାଦ ପ୍ରାଚୀର । ଏହାର ଚତୁର୍ଦ୍ଦିଗରେ ଚାରିଟି ଦ୍ୱାର ବିଶିଷ୍ଟ:— ପୂର୍ବରେ ସିଂହଦ୍ୱାର, ଦକ୍ଷିଣରେ ଦକ୍ଷିଣଦ୍ୱାର, ପଶ୍ଚିମରେ ପଶ୍ଚିମଦ୍ୱାର, ଉତ୍ତରରେ ଉତ୍ତରଦ୍ୱାର । ଏହି ଚତୁର୍ଦ୍ଦ୍ୱାରରେ ସ୍ୱୟଂ ଭଗବାନ୍ ବେଢ଼ାପରିକ୍ରମାକାରୀମାନଙ୍କୁ ଚତୁର୍ବିଧ ମୁକ୍ତି ଓ ଚତୁର୍ବର୍ଗ ପ୍ରଦାନ କରୁଅଛନ୍ତି ।

ଭିତରର ଆବରଣ ବା ପ୍ରାଚୀରର ନାମ କୂର୍ମବେଢ଼ା ବା କୂର୍ମପ୍ରାଚୀର । ଏହି କୂର୍ମପ୍ରାଚୀରକୁ ଲାଗି ଯାବତୀୟ ଆଧିକାରିକ ଦେବଦେବୀ ଏବଂ ସ୍ୱୟଂ ଭଗବାନ ଜଗନ୍ନାଥଙ୍କର ଅଂଶାବତାର ସମୂହ ରହିଅଛନ୍ତି । ଏହି କ୍ଷେତ୍ରର ଅଧିପତି ଶ୍ରୀଜଗନ୍ନାଥ ।

ଜଗନ୍ନାଥଙ୍କର ବିଶାଳ ଭୋଗମଣ୍ଡପ, ନାଟ ମନ୍ଦିର, ଜଗମୋହନ ପ୍ରଭୃତି ଆନୁସଂଗିକ ସ୍ଥାନୋଚିତ ସଂଯୋଗଶାଳା ନିର୍ମିତ ହୋଇଅଛି ।

ଏଠାରେ ମନ୍ଦିର ଓ ବେଢ଼ା ପରିକ୍ରମା କରିବାର ନିର୍ଦ୍ଦିଷ୍ଟ ଶାସ୍ତ୍ରୀୟ ବିଧି ପ୍ରଚଳିତ । ଯଥେଚ୍ଛ ପରିକ୍ରମା ଶାସ୍ତ୍ର ଓ ପରଂପରା ବିରୁଦ୍ଧ ବୋଲି ଗଣ୍ୟହୁଏ । ଶ୍ରୀମନ୍ଦିର ସିଂହଦ୍ୱାର ଠାରୁ ଆରମ୍ଭ କରି ଯଥାକ୍ରମେ ପତିତପାବନ, କାଶୀବିଶ୍ୱନାଥ, ରାମାଭିଷେକ-ମୂର୍ତ୍ତି, ସତ୍ୟନାରାୟଣ, ବଟଗୋପାଳ, ସର୍ବମଂଗଳା, ବାଳମୁକୁନ୍ଦ, ବଟବିହାରୀ ଜଗନ୍ନାଥ, ଶ୍ୱେତଗଣେଶ, କଳ୍ପବଟ, ଦକ୍ଷିଣଦ୍ୱାରସ୍ଥ ଆଦିନୃସିଂହ, ଷଡ଼ଭୂଜ ଚୈତନ୍ୟମୂର୍ତ୍ତି, ଦକ୍ଷିଣଦ୍ୱାରର ବହିର୍ଭାଗରେ ଦରିଆ ହନୁମାନ, ତତ୍ପରେ ମୁକ୍ତିମଣ୍ଡପ, ଭୁଷଣ୍ଡୀକାକ, ବିମଳା, କ୍ଷୀରଚୋରାଗୋପୀନାଥ, ସାକ୍ଷୀଗୋପାଳ, ନୀଳମାଧବ, ଭୁବନେଶ୍ୱରୀ, ସରସ୍ୱତୀ, ଲକ୍ଷ୍ମୀ, ଅତଃପରେ ଉତ୍ତରଦ୍ୱାରରେ କୋଇଲିବୈକୁଣ୍ଠ ଓ ଚୈତନ୍ୟପାଦପୀଠ ପରିକ୍ରମା କରି ଶେଷରେ ଜଗମୋହନର ଉତ୍ତରଦ୍ୱାର ବାଟେ ପ୍ରବେଶ କରି ଗରୁଡ଼ସ୍ତମ୍ଭ ପଶ୍ଚାତରେ ଶ୍ରୀଜଗନ୍ନାଥ, ସୁଭଦ୍ରା ଓ ବଳରାମଙ୍କର ଶ୍ରୀବିଗ୍ରହ ଦର୍ଶନ କରିବାର ରୀତି ପ୍ରଚଳିତ । ଏତଦ୍ବ୍ୟତୀତ ଶ୍ରୀକ୍ଷେତ୍ରର ଲୋକନାଥ, ଯମେଶ୍ୱର, ନୀଳକଣ୍ଠେଶ୍ୱର, ମାର୍କଣ୍ଡେଶ୍ୱର ଓ କପାଳ-ମୋଚନ— ଏହି ପଞ୍ଚଶିବ ଜଗନ୍ନାଥର ପଞ୍ଚମନ୍ତ୍ରୀ ରୂପେ ବିରାଜିତ । ଯେପରି ମହାସମ୍ରାଟ୍ ରାଜଚକ୍ରବର୍ତ୍ତୀ ଯାବତୀୟ ସାମନ୍ତ ରାଜା ଓ ରାଜକୀୟ ଐଶ୍ୱର୍ଯ୍ୟ ପରିବେଷ୍ଟିତ ହୋଇ ସିଂହାସନରେ ବିରାଜମାନ କରନ୍ତି, ସେହିପରି ସର୍ବାବତାରୀ, ସ୍ୱୟଂ ଭଗବାନ୍ ନିଜର ଅଂଶା-ବତାର, ଗୁଣାବତାର, ଲୀଳାବତାର ପ୍ରଭୃତିଙ୍କ ଦ୍ୱାରା ପରିବେଷ୍ଟିତ

ହୋଇ ରତ୍ନ ସିଂହାସନରେ ବିରାଜିତ । ଶ୍ରୀମଦ୍ ଭାଗବତରେ ଯାବତୀୟ ଅବତାରଙ୍କର ବର୍ଣ୍ଣନା ପରେ କୃଷ୍ଣଙ୍କ ସଂପର୍କରେ କୁହାଯାଇଅଛି—

ଏତେ ଚାଂଶକଳାଃ ପୁଂସଃ କୃଷ୍ଣସ୍ତୁ ଭଗବାନ୍ ସ୍ୱୟମ୍ । 'ତୁ' ଶବ୍ଦଦ୍ୱାରା କୃଷ୍ଣଙ୍କୁ ଅବତାର ଠାରୁ ପୃଥକ୍ କରି ସର୍ବାବତାରୀ ସ୍ୱୟଂ ଭଗବାନ୍‌ରୂପେ ସିଦ୍ଧାନ୍ତିତ କରାହୋଇଅଛି । କାହାରି ମତରେ ସେହି କୃଷ୍ଣହିଁ କଳିଯୁଗରେ କଳିଯୁଗପାବନାବତାରୀ ଜଗନ୍ନାଥ ରୂପରେ ସ୍ୱୟଂ ବିରାଜିତ । ଏପରି ବୈଭବମଣ୍ଡିତ ବିଗ୍ରହ ଭାରତର ଅନ୍ୟକୌଣସି ଧାମ ବା ପୀଠରେ ବିରାଜିତ ନାହାଁନ୍ତି; ଏହା କେବଳ ଉତ୍କଳରେ ପୁରୁଷୋତ୍ତମ କ୍ଷେତ୍ରରେ ସମ୍ଭବହୋଇ ପାରିଛି । ପଦ୍ମପୁରାଣୋକ୍ତ "ହ୍ୟତ୍କଳେ ପୁରୁଷୋତ୍ତମାତ୍" । ଏହି ଶାସ୍ତ୍ରବାକ୍ୟ ଏ ଉକ୍ତ ସିଦ୍ଧାନ୍ତକୁ ତାର ସ୍ୱରରେ ଘୋଷଣା କରୁଅଛି ।

## ଶ୍ରୀକ୍ଷେତ୍ରର ଦର୍ଶନୀୟ ପ୍ରଧାନ ସ୍ଥାନ ସମୂହ

ଚନ୍ଦନତୀର୍ଥ, ବାଡ଼ି ହନୁମାନ, ସୁନାର ଗୌରାଙ୍ଗ, ନରେନ୍ଦ୍ର ସରୋବର, ଗୁଣ୍ଡିଚାମନ୍ଦିର, ଇନ୍ଦ୍ରଦ୍ୟୁମ୍ନ ସରୋବର, ଜଗନ୍ନାଥ-ବଲ୍ଲଭମଠ । ସମୁଦ୍ରତୀରବର୍ତ୍ତୀ ସ୍ୱର୍ଗଦ୍ୱାର, ଭାରତସେବାଶ୍ରମ ସଂଘ, ଚୈତନ୍ୟ ମଠ, ଗୋବର୍ଦ୍ଧନ ମଠ, ହରିଦାସ ସମାଧି, ଚଟକପର୍ବତ, ଟୋଟା ଗୋପୀନାଥ, ଯମେଶ୍ୱର, କବିର ମଠ, ନାନକ ମଠ, ପୁରୁଷୋତ୍ତମ ମଠ, ଯୋଗଦା ଆଶ୍ରମ, ସିଦ୍ଧବକୁଳ, ରାଧାକାନ୍ତ ମଠ, ଗଂଗାମାତା ମଠ, ଶ୍ୱେତଗଂଗା, ଏମାର ମଠ, ଶ୍ରୀଲୋକନାଥ ଓ ମାର୍କଣ୍ଡେଶ୍ୱର ପ୍ରଭୃତି । ସର୍ବାପେକ୍ଷା ଏ କ୍ଷେତ୍ରସ୍ଥ ପଞ୍ଚତୀର୍ଥ ପ୍ରତ୍ୟେକ

ଭକ୍ତ ତଥା ଯାତ୍ରୀଙ୍କର ଦର୍ଶନୀୟ ଏବଂ ସେଥିରେ ସ୍ନାନାଦି କ୍ରିୟା ସମାପାନ ସର୍ବାଦୌ କର୍ତ୍ତବ୍ୟ ।

"ମାର୍କଣ୍ଡେୟା ବଟେକୃଷ୍ଣେ ରୋହିଣୀୟେ ଚ ମହୋଦଧିଃ
ଇନ୍ଦ୍ରଦ୍ୟୁମ୍ନ ସରସ୍ନାତ୍ୱା ପୁନର୍ଜନ୍ମ ନ ବଦ୍ୟତେ ।"

ମାର୍କେଣ୍ଡେୟ ପୁଷ୍କରଣୀରେ ସ୍ନାନ, ଶ୍ୱେତଗଙ୍ଗା ସ୍ନାନ, ରୋହିଣୀକୁଣ୍ଡ ଦର୍ଶନ, ସମୁଦ୍ର ଓ ଇନ୍ଦ୍ରଦ୍ୟୁମ୍ନରେ ସ୍ନାନ । ଏହା ଅତ୍ୟନ୍ତ ପବିତ୍ର ଓ ପାପହାରୀ ।

## ମହାପ୍ରସାଦ

ପୁରୁଷୋତ୍ତମ କ୍ଷେତ୍ରରେ ବିଶେଷତ୍ୱ ହେଉଛି ଜଗନ୍ନାଥଙ୍କ ମହାପ୍ରସାଦ । ଏହି ମହାପ୍ରସାଦ ସେବନରେ ଉଚ୍ଚନୀଚ, ଧନୀଦରିଦ୍ର, ଛୁଆଁ ଅଛୁଆଁ ଭେଦଭାବ ନଥାଏ । ଚଣ୍ଡାଳଠାରୁ ବ୍ରାହ୍ମଣ ପର୍ଯ୍ୟନ୍ତ ସମସ୍ତେ ଜଗନ୍ନାଥଙ୍କ ମହାପ୍ରସାଦକୁ ଅତି ଆଦରରେ ଏକତ୍ର ଗ୍ରହଣକରନ୍ତି । ମହାପ୍ରସାଦ ସେବାରେ ଉଚ୍ଛିଷ୍ଟବାରଣ ନଥାଏ । ସମଗ୍ର ଭାରତରେ ଜାତିଭେଦର ପ୍ରଥାର ପ୍ରଚଳନ ଥିଲାବେଳେ, ଏଠାରେ ସମସ୍ତେ ଏକତ୍ର ଭୋଜନକରିବା ପ୍ରଥାବିଶେଷ କୌତୂହଳ ପୂର୍ଣ୍ଣ । ଜଗନ୍ନାଥଙ୍କ ନିକଟରେ ପୂଜାହୋଇଥିବା ଅନ୍ନଭୋଗକୁ ମହାପ୍ରସାଦ କହି ହିନ୍ଦୁମାନେ ଜାତିବର୍ଣ୍ଣ ନିର୍ବିଶେଷରେ ପରମ ଶ୍ରଦ୍ଧାର ଗ୍ରହଣ କରନ୍ତି ।

ଏହି ମହାପ୍ରସାଦ ଶବ୍ଦଟି ଏକ ତାନ୍ତ୍ରିକ ଶବ୍ଦ । ତନ୍ତ୍ରାଗମରେ ଓ ଭୈରବୀ ଚକ୍ରରେ ଅଧିଷ୍ଠିତ ଦେବୀଙ୍କ ନିକଟରେ ଯେଉଁ

ଅନ୍ନବ୍ୟଞ୍ଜନାଦ୍ଦ ଭୋଗ ସମର୍ପିତ ହୁଏ ତାହାକୁ ମହାପ୍ରସାଦ କହନ୍ତି । ତାନ୍ତ୍ରିକ ପରମ୍ପରାରେ ପ୍ରାସାଦ ସେବନପାଇଁ ଜାତି ବର୍ଣ୍ଣର ବିଚାର ନଥାଏ । ଜଗନ୍ନାଥଙ୍କ ନିକଟରେ ଯେଉଁ ଭୋଗ ନୈବେଦ୍ୟ ହୁଏ ତାହା ପୁନଶ୍ଚ ବିମଳାଙ୍କୁ ସମର୍ପଣ କରାଯାଏ । ବିମଳା ଓ ଭୈରବୀ ଚକ୍ରରେ ଅଧିଷ୍ଠିତ ଏହି ଭୋଗକୁ ମହାପ୍ରସାଦ କୁହାଯାଏ ।

ରଥ ସମୟରେ ଗୁଣ୍ଡିଚାଗୃହରେ ଶ୍ରୀବିଗ୍ରହମାନେ ଥିଲାବେଳେ ସେଠାରେ ପୂଜାହେଉଥିବା "ଭୋଗକୁ ମହାପ୍ରସାଦ ମଧ୍ୟ କୁହାଯିବ କାରଣ ଏଠାରେ ବୈଷ୍ଣବ ତାନ୍ତ୍ରିକ ଯନ୍ତ୍ର ତଥା ମନ୍ତ୍ର ସାହାଯ୍ୟରେ ନୈବେଦ୍ୟ ଅର୍ପିତ ହୁଏ । ଏହିପରି ନାନା ବିଭୂତିରେ ପରିପୂର୍ଣ୍ଣ ଏ କ୍ଷେତ୍ରର ମାହାତ୍ମ୍ୟ ବାସ୍ତବିକ ବର୍ଣ୍ଣନାର ଅତୀତ । ଗୟାରେ ପିଣ୍ଡଦାନ, ପ୍ରୟାଗରେ ମୁଣ୍ଡନ କାର୍ଯ୍ୟ ସମାପନ କଲେ ଯେଉଁ ଫଳ ମିଳେ ଏ କ୍ଷେତ୍ରରେ ଅନ୍ନଦାନ କଲେ ତାହାଠାରୁ ଅଧିକ ଫଳ ମିଳେ । ଅନ୍ୟାନ୍ୟ କ୍ଷେତ୍ରରେ ପ୍ରସାଦ ଏଠାରେ ତାହା ମହାପ୍ରସାଦ । ଏହି ମହାପ୍ରସାଦର ମହାତ୍ମ୍ୟ ଅତିପବିତ୍ର ଓ ପ୍ରସିଦ୍ଧ ।

ଜଗନ୍ନାଥଙ୍କ ରତ୍ନବେଦୀ ଯାହାକି କୋଟି ସଂଖ୍ୟକ ଶାଳଗ୍ରାମ ଉପରେ ଅବସ୍ଥିତ ଏବଂ ଯେଉଁ ବ୍ରହ୍ମଶିଳା ତଥା ଜୀବନ୍ତ ଶାଳଗ୍ରାମ ବ୍ରହ୍ମପଦାର୍ଥ ରୂପେ ଦାରୁବ୍ରହ୍ମରେ ନ୍ୟସ୍ତ । ସେହି ବେଦସ୍ଥ ପିଣ୍ଡି ଏବଂ ଜଗନ୍ନାଥାଦ୍ଦି ପ୍ରତିମା ଏହି ଉଭୟର ସମ୍ମିଶ୍ରଣ ତଥା ସଂଯୋଗରେ ଯେଉଁ ପ୍ରସାଦ ହୁଏ ତାହାମଧ୍ୟ ମହାପ୍ରସାଦ । ଜଗନ୍ନାଥଙ୍କ ରତ୍ନବେଦୀ ସର୍ବାତ୍ମ ସଂଯୋଗ ଯୋଗପୀଠ । ଏହି ଯୋଗପୀଠସ୍ଥ ଦେବତାଙ୍କ ପ୍ରସାଦ ଅର୍ପିତ ହେଉଥିବାବେଳେ ଅନ୍ନବ୍ରହ୍ମ, ଦାରୁବ୍ରହ୍ମ ଓ ପରମବ୍ରହ୍ମ ଏହି ତିନିବ୍ରହ୍ମଙ୍କର ମିଳନାବସ୍ଥାରେ ଅପୂର୍ବ ଭାବର ଉଦୟ ହୁଏ, ସେତେବେଳେ ଯାହା କିଛି ସମର୍ପିତ ହୁଏ ତାହାମଧ୍ୟ ହେବ

ମହାପ୍ରସାଦ । ସର୍ବୋପରି ଏ ଅନ୍ନର ପାଚକା ରୂପରେ ଯେତେବେଳେ ମହାଲକ୍ଷ୍ମୀ ସ୍ୱୟଂ ନିଯୁକ୍ତା ସେତେବେଳେ ତାହା ମହାପ୍ରସାଦ ।

"ଯଦନ୍ନଂ ପାଚୟେତ୍ତ ଲକ୍ଷ୍ମୀଃ
ହରସ୍ତେ ପରିବେଷଣଂ
ସ୍ୱୟଂ ଜନାର୍ଦ୍ଦନଃ ଭୁଂକ୍ତ୍ୱାକଃ
ସଂଶୟତ ପାର୍ବତୀ ।
ପୁନଶ୍ଚ ଜଗନ୍ନାଥସ୍ୟ ନୈବେଦ୍ୟଂ
ମହାପାତକ ନାଶନଂ
ଭକ୍ଷଣାତ୍ ଫଳମାପ୍ନୋତି
କପିଳା କୋଟିଦାନଜଂ ।"



ମୁଦ୍ରାକର—ଶ୍ରୀ ଜାନକୀନାଥ ହାଲଦାର, ପାୟୋନିଅର ପ୍ରେସ, କଟକ—୧